# ସ୍ମୃତିର ଶାନ୍ତିନିକେତନ



ମନୋରମା ବିଶ୍ୱାଳ ମହାପାତ୍ର



ଶାନ୍ତିନିକେତନ ମୋ ଅସ୍ତିତ୍ୱର ମହାକାବ୍ୟ । ଏହାକୁ ବ୍ୟକ୍ତି କିମ୍ବା ବିଶ୍ୱରେ, ସ୍ଥାନ କିମ୍ବା ସ୍ଥାନୀୟତାରେ ସୀମାବଦ୍ଧ କରାଯାଇ ପାରିବ ନାହିଁ। ଶାନ୍ତିନିକେତନ କେବଳ ସ୍ଥାନକୁ ଚିହ୍ନିତ କରେ ନାହିଁ । ଚେତନାକୁ ଉଦ୍‌ବେଳିତ କରେ । ଅସ୍ତିତ୍ୱକୁ ବ୍ୟାପକତା ଆଣିଦେବାରେ ସାହାଯ୍ୟ କରେ । କେତେ କେତେ ସ୍ମୃତି ଏବଂ ସମ୍ପର୍କର ଗାଥା ଏଥିରେ ଗୁନ୍ଥା ହୋଇଛି । ଜଣେ ସମ୍ବେଦନଶୀଳ କବି ଶାନ୍ତିନିକେତନର ମହିମାକୁ କିଭଳି ଧାରଣ କରିଛି, ତାହାରି ସାକ୍ଷ୍ୟ ବହନ କରିଛି ଏହି କାବ୍ୟ । ବ୍ୟକ୍ତିରୁ ବିଶ୍ୱକୁ ଉତ୍ତରିତ ହେବା ପାଇଁ ଶାନ୍ତିନିକେତନ ମୋତେ ବାଟ ଦେଖାଇଛି । ଏହାର ବ୍ୟାପ୍ତି ଆକାଶସ୍ପର୍ଶୀ । ଏହି ବ୍ୟାପ୍ତି ଭିତରେ ମୋ ସୀମିତ କବିସତ୍ତା ଆତ୍ମଲୀନ ହୋଇଯାଇଛି । ପ୍ରାରବ୍ଧ ଏବଂ ଭବିତବ୍ୟ ମଝିରେ ଏହାର ଉଚ୍ଚାରଣ । ସବୁ ନୀରବତାକୁ ଏକାଠି କରି ମୁଁ ପ୍ରାର୍ଥନାଟିଏ ନିର୍ମାଣ କରିଦେଇଛି ।

ସ୍ମୃତିର ଶାନ୍ତିନିକେତନ

ଡକ୍ଟର ମନୋରମା ବିଶ୍ୱାଳ ମହାପାତ୍ର

ପ୍ରକାଶକ: ପ୍ରୀତମ ପ୍ରକାଶନ, ୧ ୨ ୫ ଆଚାର୍ଯ୍ୟ ବିହାର, ଭୁବନେଶ୍ୱର

ପ୍ରଥମ ପ୍ରକାଶ : ୨ ୦ ୧ ୩

ଦ୍ୱିତୀୟ ମୁଦ୍ରଣ : ୨୦୧୮

ପ୍ରଚ୍ଛଦ : ବିଭୁ ପ୍ରସୂନ ଦାସ

ମୁଦ୍ରଣ : ଦିବ୍ୟ ମୁଦ୍ରଣୀ, ଭୁବନେଶ୍ୱର

ମୂଲ୍ୟ : ₹ ୧୫୦/- ଟଙ୍କା

---

**SMRUTIRA SHANTINIKETANA**
Poetry by
**Dr. Manorama Biswal Mohapatra.**

Publisher **Pritam Prakasan,**
125 Acharyabihar, Bhubaneswar
E-mail: manobm48@yahoo.co.in
First Edition : 2013
Second Editon : 2018
Cover Design : **Bibhu Prasuna Das**
Printed at : **Divya Mudrani**, Bhubaneswar
Price : **₹ 150/-**

ଶାନ୍ତିନିକେତନର ପ୍ରିୟବାନ୍ଧବୀ
**'ଦମୟନ୍ତୀ'**କୁ ସମର୍ପିତ ।

# ଏକ

ସବୁ ଅନୁଭବ ନେଇ ଆସିଛି ସାଙ୍ଗରେ
ଶାନ୍ତିନିକେତନ
କୁହୁଡିଆ ମେଘୁଆ ମେଘୁଆ ଦିନ
ମାଧବୀ ଫୁଲର ଋତୁ
ସୁନାରୀ, ଶପ୍ତପର୍ଣ୍ଣି
ବାସ୍ନାର ସକାଳ।
କେଉଁ ଅନ୍ୟମନସ୍କ କବିର
ଅଧାଲେଖା ହସ୍ତାକ୍ଷର
କେଉଁ ଆନମନା ଶିଳ୍ପୀର
ଉଦାସ ସ୍ୱାକ୍ଷର।
ଆସିଲା ବେଳେ
କିଛି ଛାଡି ଆସିନାହିଁ
ସବୁ ନେଇ ଆସିଛି ସାଙ୍ଗରେ।
ଝୁରୁଝୁରୁ ବାସ୍ନା ଡେଣାରେ ଧରି
ଉଡି ବୁଲୁଥିବା ପକ୍ଷୀଟିର
କାତର ଚାହାଣୀ।
ରବୀନ୍ଦ୍ର ଭବନର
କାନ୍ଥକୁ କୋଳେଇ ଧରି
ଧୀରେ ଧୀରେ ଆଖି ଖୋଲୁଥିବା
ନୂଆ ଗୁଣ୍ଡିଚିର ଚଞ୍ଚଳ ଆଖିପତା
କିଛି ଛାଡ଼ି ଆସିନାହିଁ
ମୋ ଜାଣିବାରେ ।

ତଥାପି ମନେ ହୁଏ ବେଳେବେଳେ
ରବୀନ୍ଦ୍ର ସଙ୍ଗୀତର କୋମଳ ଗାନ୍ଧାର ଛବି
ଯାହା ସ୍ମୃତିର ଦର୍ପଣ ହୋଇ
ମୋ ଛାତି ତଳ ସିନ୍ଦୁକ ଭିତରେ
କାରଣେ ଓ ଅକାରଣେ
ନଡ଼ାଚଡ଼ା କରେ।

ଆସିଲା ବେଳେ ତ ସବୁ ନେଇ ଆସିଥିଲି
ତଥାପି କେମିତି କେଜାଣି
ହଜିଗଲା ମୋ ପ୍ରିୟ ବାନ୍ଧବୀ
ଦମୟନ୍ତୀ ଚିଠି।
ଚିଠିରେ ଖୋଦିତ ଥିଲା ତା ହସ୍ତାକ୍ଷର ଠିକଣା
କେଉଁ ସୁଦୂର ନୀଳ ସମୁଦ୍ରରେ ଘେରା
ଅଳେଇଚ ଲବଙ୍ଗ ଦ୍ୱୀପର ଦେଶ ମରିସସ।
ଯେଉଁଠାରେ ଦମୟନ୍ତୀ
ବାରହାତ କେଶକୁ ଫରୁଆରେ ବନ୍ଦ କରି
ଅପେକ୍ଷା କରିଛି କେଉଁ ଅନାଦି କାଳରୁ
ଦିନେ ନା ଦିନେ ବୋଇତ ଲାଗିବ ଆସି
ମରିସସର ଏକ ଅଜଣା ଦ୍ୱୀପରେ।

କେହି ଜଣେ ତା ପିଲାଦିନ ନାଁ ଧରି ଡାକିବ ହୁଏତ
ଦମୟନ୍ତୀ ଦୂର ନୀଳ ଆକାଶର ଶୁକ୍ରତାରା
ଦିନେ ସିଏ ଖରାଛୁଟିରେ ଭଦ୍ରକରେ
ଖୋଜୁଥିଲା ଆଞ୍ଜୁଳା ଆଞ୍ଜୁଳା ଶୈଶବର ବାସ୍ନା
ମୋ ମାଆ ଆଖିରୁ।
ସମୟ ଏମିତି ଦିନେ ସରିଯାଏ
ଶାନ୍ତିନିକେତନ ଆପେ ଆପେ
ଘୁଞ୍ଚିଯାଏ ପଦ୍ମପରି ଦୂରକୁ ଦୂରକୁ।
ଧରିବାକୁ ଚେଷ୍ଟା କରି ଧରିହୁଏ ନାହିଁ।
ରବୀନ୍ଦ୍ର ସଙ୍ଗୀତର ଧୂନ୍ ପରି
ମଧୁର ମଧୁର ଲାଗେ
ସ୍ୱପ୍ନମୟ ସ୍ମୃତିମୟ ଶାନ୍ତିନିକେତନ। ■ଛ

## ଦୁଇ

ମୁଁ ସେଦିନ ସନ୍ଧ୍ୟାବେଳେ
ବଉଳ ମୂଳରେ ବସି
ବଉଳର ଭୁରୁଭୁରୁ ବାସ୍ନାକୁ
ମୋ ମନରେ ବୋଲି ହେଉଥିଲି।
ବସନ୍ତ ପବନ ଆସି ବିଷାଦରେ ଘାରି ହେଉଥିବା
ମନଟାକୁ ଖୁବ୍ ଧୀରେ ଛୁଇଁ ଦେଉଥିଲା।
ସବୁଠାରୁ ପୁରାତନ ଗଛ ସପ୍ତପର୍ଣ୍ଣି
ଅଭିଭାବକ ଢଙ୍ଗରେ ବସିଥାଏ
ତାଳପତ୍ର ମେଲି।

ଏବେ ଫେରିବାର ବେଳ ହୋଇଗଲା
ସାତ ସମୁଦ୍ର ସେପାଖରୁ
ଦିଶିଲାଣି ନେତ।
ସପ୍ତପର୍ଣ୍ଣି ବଉଳର ମହକକୁ
ଗଣ୍ଠିଧନ କରି ଫେରିଯିବି
ବିଷାଦ ନଗ୍ରକୁ।
ଏଠାରୁ କେବେବି ଦିଶେ ନାହିଁ
ରକ୍ତନଦୀ ପାରି ହେବା ଦୃଶ୍ୟ
ସମୟର ଗବାକ୍ଷରେ ଦିଶି ଯାଉଥାଏ
ବେଳେବେଳେ
କବିର ପୃଥିବୀ।



# ତିନି

କବିର ପୃଥିବୀ ଥିଲା ଶାନ୍ତିନିକେତନ
ମଣିମୁକ୍ତା ଖଚିତ ନଅର ନୁହେଁ
ହୀରା କିମ୍ବା ନୀଳାର ନଅର ମଧ୍ୟ ନୁହେଁ
କୋଇଲି ଓ କୁମ୍ଭାଟୁଆ ଗୀତ ଗାଉଥିବା
ପୃଥିବୀର ଛବି ଥିଲା
କେନ୍ଦୁବିଲ୍ୱ ଗାଁ'ର ଚିତ୍ର କିମ୍ବା ଅଜୟ ନଈର ଧାର
ଧୀରେ ଧୀରେ ବହିଯାଉଥିଲା ।
କବି ଋଷି ରବୀନ୍ଦ୍ରନାଥଙ୍କ ଦେଶ
ସବୁ ପାଇଚିର ଦେଶ ଶାନ୍ତିନିକେତନ ।

ସବୁ ପାଇଚିର ଦେଶ ହେଉ ସ୍ୱପ୍ନଲୋକ ହେଉ
ଯେଉଁଠାରେ ସୁନ୍ଦର ସ୍ୱପ୍ନଟିଏ
ତାଳପତ୍ର ମେଲି ଉଠିଥିଲା ଆକାଶକୁ ।
ଆକାଶର ରଙ୍ଗ କେମିତି ବଦଳୁଥିଲା
ପ୍ରତିଟି ଋତୁରେ ।
ନାଲି ଅବିର ରଙ୍ଗରେ ତ
ଆଉ କେତେବେଳେ ମେହେନ୍ଦି ରଙ୍ଗରେ
ଶାନ୍ତିନିକେତନ ବିଭୋର ହୋଇ ଉଠୁଥିଲା
ଆନନ୍ଦରେ ।

ମୁଁ ସେଠାରେ ପହଞ୍ଚିଲା ପରେ
ମୋ ସ୍ୱପ୍ନର ରଙ୍ଗ ବଦଳିଲା ।
ଅନୁରାଗର ରଙ୍ଗରେ
ମୋ ଅନ୍ତକରଣ ଉଦ୍‌ଭାସିତ ହେଲା ।
ମୁଁ ଭିଜିଲି ବର୍ଷାରେ
ବସନ୍ତରେ ଶିଶିର କଣାରେ
ମୋତେ ମେଘ ଡାକିଲା 'ଆୟ'
ନଈ ଡାକିଲା 'ଆୟ'
ମେଘ ସଙ୍ଗେ ମେଘ ହୋଇଗଲି ।
ଅଁଳା ଓ ହରିତକୀ ବଣରେ
ମେଘର ଟୁପ୍‌ଟାପ୍ ଶବ୍ଦ ସଙ୍ଗୀତ ହୋଇଗଲା
ମୁଗ୍ଧ ହେଲି ।
ଚତୁର୍ଦ୍ଦିଗ କେମିତି ମୋହମୟ ସ୍ୱପ୍ନମୟ ଲାଗିଲା ।



## ଚାରି

କେତେ କଣ ନେଲି
କଣ ଦେଲି କିଛି ମନେ ନାହିଁ।
ଆସିଲା ବେଳେ
ଉଜାଡ଼ କରି ସବୁ ନେଇ ଆସିଥିଲି।
ସ୍ମୃତିଭରା ସଂଜ ଓ ସକାଳ
ଗୁଣୁଗୁଣୁ ନଈର ଅନ୍ଧାର
ଶେଷରେ ପ୍ରେମ ଅଶ୍ରୁ ମିଶାମିଶି
ବିମୁଗ୍ଧ ପ୍ରଣୟ।
ଶାନ୍ତିନିକେତନ
ମୋ ଭିତରେ ବାନ୍ଧିଥିଲା
ସଂପର୍କର ସେତୁ
ସେଥିରେ ମିଶିଥିଲା
ବିଦାୟର ଦୀର୍ଘଶ୍ୱାସ।
ସେଥିରେ ପୁଣି ନେସି ହୋଇ ରହିଥିଲା
ଫାଲଗୁନର ଇତିହାସ।

କେବେ କିଛି ଦେଇନାହିଁ ତାକୁ
ବରଂ ମୁଁ ତା'ଠାରୁ ନେଇ ଆସିଛି
ମୋର ସାଫଲ୍ୟର ମୁହୂର୍ତ୍ତକୁ
ଆନନ୍ଦ ଓ ବିଷାଦର
ବିଦାୟ ଲଗ୍ନକୁ।

ଆଉ ଅଧିକ କଣ ଦେଇଥାନ୍ତା
ଆଜି ବି ଯେଉଁଆଡେ ଯାଏ
ଦିଶିଯାଏ ତାର ଝକ୍‌ଝକ୍ ଖରାବେଳ ମୁହଁ
କୁମ୍ଭାଟୁଆ ଡାକର ସକାଳ।
ଚିତ୍ରିତ କାର୍‌ପେଟ୍ ସୁନାରୀ ଫୁଲର
ଆଜି ବି ସ୍ୱପ୍ନଦେଖେ
ଶାନ୍ତିନିକେତନ ମୋତେ
ଡାକୁଛି ପାଖକୁ
ଅତି ଅନ୍ତରଙ୍ଗ ବନ୍ଧୁପରି।
ପ୍ରେମ ପରି।
ମୁଁ ତାକୁ ଭଲ ପାଏ ବୋଲି ତ
ଜୀବନ ମୋତେ ପ୍ରତାରିତ କରିନାହିଁ
ଆଜିଯାଏ।
ଭରପୂର ପ୍ରେମ
ଜୀବନକୁ କୋଳେଇ ନେବାର ଆଗ୍ରହ
ଆଉ କଣ ଦେଇଥାନ୍ତା।
ଆଜି ବି ଜୀବନର ସାୟାହ୍ନରେ
ଶୁଭିଯାଏ ତାର ଡାକ।

ମୁଁ ସେଦିନ ବି ଯାଇଥାନ୍ତି
ତମେ କଣ ଯିବାକୁ ଦେଲ
ଖୁସିରେ ?
ମୋ ବାଟରେ ଛିଡ଼ା ହେଲ
କହିଲ, ଯାଆନା
ଏଇଠି ସବୁ ଅଛି ।
ଶାନ୍ତିନିକେତନ ଅଧିକ ଆଉ କ'ଣ ଦେବ ?
ଆଉ ଦିନେ
ଆଲୁଅକୁ ଡରୁଥିବା ମଣିଷମାନେ
ମୋ ବାଟରେ
କଣ୍ଟା, ଝଟା, ଇଟା ପଥର
ଥୋଇଦେଇ କହିଲେ
ଯାଆ କେମିତି ଯିବୁ ଯାଆ ।

କୁଢ଼ କୁଢ଼ ବାଧାବିଘ୍ନ
ଅତିକ୍ରମ କରି ମଁ ଯାଇଥାନ୍ତି
ଶାନ୍ତିନିକେତନ ପାଇଁ
ସବୁକଥା ସହିବାରେ
ଦୁଃଖ ବି ନ ଥିଲା,
ଅନ୍ତର୍ଘାତି ମଣିଷର ଚକ୍ରାନ୍ତରେ
ମୁଁ ଶରବ୍ୟ ହେଲି
ମଣିଷକୁ ଭଲପାଏଁ ବୋଲିତ
ବାରମ୍ବାର ଫେରିଆସେ ମଣିଷ ପାଖକୁ
ଶାନ୍ତିନିକେତନ ପାଖକୁ।
ଦୂର ଆକାଶର ତାରା ଶାନ୍ତିନିକେତନ
ତୋତେ ଖାଲି ଦୂରରୁ ଦେଖିବି।
ସ୍ୱପ୍ନରେ ହେଉ ଅବା
କଳ୍ପନାରେ।
ତୋ ସ୍ମୃତିକୁ ଗଣ୍ଠିଧନ କରି
ବଞ୍ଚିବି।



## ପାଞ୍ଚ

ଆଜି କାହା ଜନ୍ମଦିନ
ସ୍ମୃତି ଆଉ ସ୍ୱପ୍ନର ମିଶାମିଶି
ମଧୁମୟ ବେଳା।
ଏଇ ଭୂମିରେ ମୁଁ ଦିନେ
ପୋତି ଦେଇଥିଲି ଗୋପନରେ
କାହାକୁ ନ କହି
ମୋ ପ୍ରେମର ଛୋଟ ଏକ ବୀଜ।
କେତେ ଆଲୋକବର୍ଷ
କେତେ ମନ୍ୱନ୍ତର ଡେଇଁ
ମୁଁ ଆଜି ଆସିଛି
ଦେଖିବାକୁ ସବୁ ପାଇଚିର ଦେଶ
ମୋ ପ୍ରିୟ ଶାନ୍ତିନିକେତନ।

## ପାଞ୍ଚ

ଆଜି କାହା ଜନ୍ମଦିନ
ସ୍ମୃତି ଆଉ ସ୍ୱପ୍ନର ମିଶାମିଶି
ମଧୁମୟ ବେଳା।
ଏଇ ଭୂମିରେ ମୁଁ ଦିନେ
ପୋତି ଦେଇଥିଲି ଗୋପନରେ
କାହାକୁ ନ କହି
ମୋ ପ୍ରେମର ଛୋଟ ଏକ ବୀଜ।
କେତେ ଆଲୋକବର୍ଷ
କେତେ ମନ୍ୱନ୍ତର ଡେଇଁ
ମୁଁ ଆଜି ଆସିଛି
ଦେଖିବାକୁ ସବୁ ପାଇଟିର ଦେଶ
ମୋ ପ୍ରିୟ ଶାନ୍ତିନିକେତନ।

ଆଜି ଭାରି ଇଚ୍ଛାହୁଏ
ଘଡ଼ିଏ ବସିବା ପାଇଁ
"ଫଗୁଣ ବଧୂ"ର ଝୁରୁଝୁରୁ ସ୍ୱପ୍ନର ଛାଇରେ,
ଆଜି ମୋତେ ଜହ୍ନ ଡାକେ
ଶାଳବଣ ଡାକେ
ସୁନାରୀ ଫୁଲରେ ବସି
ପ୍ରଜାପତି ଡାକେ
ଫୁଲପତ୍ର ପକ୍ଷୀର କାକଳୀ ଛୁଇଁବାକୁ
ମୋ ମନ କେମିତି ଆଜି
ଅସହାୟ ହୋଇଯାଏ।

କେତେ କେତେ ଜହ୍ନରାତି
କଟିଛି ମୋ
ସଙ୍ଗୀତରେ ବିଭୋର ହେବାରେ ।
ମୋ ପ୍ରେମର ସପ୍ତପର୍ଣ୍ଣ
ଆଜି ବି ଫୁଟୁଛି ସେ ମାଟିରେ
ମାଟି ବି ମହକି ଯାଏ ପ୍ରେମର ବାସ୍ନାରେ
ସବୁ ଋତୁରେ ।

ଋତୁମତୀ ଇଛା ଥିଲା ଦିନେ
ଇଛା ସବୁ ଫୁଲ ହୋଇ ଫୁଟୁଥିଲା
ସୁନାରୀ ଗଛରେ ।
ପୃଥିବୀର ସବୁ ସ୍ୱପ୍ନ ହଜି ଗଲା ବେଳେ
ମାଳମାଳ ସ୍ୱପ୍ନ ସବୁ ଘର ବାନ୍ଧୁଥିଲେ
ଶାନ୍ତିନିକେତନରେ ।

ସ୍ୱପ୍ନର ଘର ମାନେ ଶାନ୍ତିନିକେତନ
ସ୍ମୃତିମାନେ ବିମୁଗ୍ଧ କାକଳୀ
ପକ୍ଷୀମାନଙ୍କର।
ଜହ୍ନରାତିରେ ବାଇଆ ହୋଇ
ନାଁ ନ ଜଣା ବାସ୍ନାରେ
ଘୁରି ବୁଲୁଥିବା ପକ୍ଷୀଟିଏ ମୁଁ
ଭୋର ହେବା ଆଗୁ
ରାତି ଆକାଶରେ
କୁଆଁତାରା ଦେଖି
ଅନ୍ୟମନସ୍କ କବିଟିଏ ମୁଁ।



## ଛଅ

ଆଜି ବସନ୍ତର ଆବାହନ,
ଆଜି ବସନ୍ତର ଜୟଗାନ
ଆଜି ମହୁଲ ଫୁଲର ମହୁ
କୃଷ୍ଣଚୂଡା, ବଉଳ ଓ ନିମଫୁଲର ମହୁ ପିଇ
ମତୁଆଲା ପ୍ରଜାପତି, ଭଅଁର ଓ ମହୁମାଛି ।
ଛୋଟ ଚଢ଼େଇଟି
ଏ ଗଛରୁ ସେ ଗଛ
ସେ ଗଛରୁ ଏ ଗଛ ହୋଇ
ସ୍ୱପ୍ନ ଦୋଳିରେ ଝୁଲୁଛି କେବଳ
ଦୋଳ ମେଳଣ, ବସନ୍ତ ଉତ୍ସବ
ସ୍ୱପ୍ନର ତାରକସିରେ ଗୁନ୍ଥା
ଶାନ୍ତିନିକେତନର
ବିମୁଗ୍ଧ ଫଗୁଣ ।

ତମର କଣ ମନେ ଅଛି ଏତେ କଥା
ପ୍ରଥମ ପ୍ରେମର କଥା
ମୟୂରାକ୍ଷୀ, ଶାଳବିଥି, ବକୁଳ ବିଥିର।
ଶାନ୍ତିନିକେତନର।
ଗୋଟିଏ ପ୍ରତିଶ୍ରୁତିରେ ବନ୍ଧା ହୋଇଗଲା
ସେଦିନ କେମିତି କେଜାଣି
ମୋର ଇହକାଳ
ପରକାଳର ଜୀବନ।
ଆନନ୍ଦରେ ଭରିଗଲା ମନ।
ଆହୁରି ଆହୁରି ସ୍ୱପ୍ନର ଦୋଳିରେ
ବସି ମନ ଖୁସିରେ ଝୁଲିଲି।
ସ୍ୱପ୍ନକୁ ଗଣ୍ଠିଧନ କରି ବଞ୍ଚିଲି
ଏତେକାଳ।

ଶାନ୍ତିନିକେତନ ସାକ୍ଷୀ ଏ ସବୁକଥାର
ଏ ଜନ୍ମରେ ନ ହେଲେ ବି
ଆସନ୍ତା ଜନ୍ମରେ
ମୁଁ ଫେରି ଆସିବି
ଛୋଟ ପକ୍ଷୀଟିଏ ହୋଇ
ସୁନାରୀ ଫୁଲ ଗଛରେ ବସି
ଗାଇବି ବସନ୍ତର ଗୀତ।
ସବୁଠୁ ପୁରୁଣା ଗଛ ଡାଳରେ ମୁହଁ ରଖି
ଦେଖିବି
କେମିତି ସୂର୍ଯ୍ୟ ଉଠୁଛି ପୂର୍ବାଶାରେ
କେମିତି ଧୀରେ ଧୀରେ ଆଖି ଖୋଲିବା ଆଗରୁ
ବଉଳ ଫୁଲଟି ଝରି ପଡୁଛି
ଅତି ଅସହାୟ ଭାବେ ମାଟି ଉପରେ।

ଏସବୁ କଥାକୁ ମୁଁ
ନା ଲେଖି ପାରିଲି କବିତାରେ
ନା ଯୋଡି ପାରିଲି ଚିତ୍ରରେ।
ମୁଁ କେବେ ବି ମୁହଁ ଖୋଲି
କହିପାରିନି
ମୁଁ ତୋତେ ଭଲପାଏଁ
ମୋ ପ୍ରିୟ ଶାନ୍ତିନିକେତନ।
ଆଜିଯାଏ କେବଳ ଘିଅ ଦୀପଟିଏ
ଜଳାଇ ରଖିଛି ଯାହା
ମୋ ହୃଦୟର ଗମ୍ଭୀରା ଭିତରେ।



# ସ୍ୱାତ

କିଏ ରୋପଣ କରିଥିଲା
ଛୋଟ ଛୋଟ ଘରାଗଛ
ସପ୍ତପର୍ଣ୍ଣ, ମାଧବୀ
ବଉଳ ପଳାଶ ଆଉ ଗଙ୍ଗଶିଉଳିର ?
କେଉଁ ବିଦେଶିନୀ ପାଇଁ
ସ୍ମୃତିସ୍ତମ୍ଭ ଥାପିଥିଲ
ହୃଦୟରେ
କେତେ ଶିଶିର ଭିଜା ସକାଳ
କେତେ ପୌଷର ଅପରାହ୍ଣ
ଭିଜି ଯାଇଥିବ ତମର
କୋମଳ ଗାନ୍ଧାର ରାଗରେ ।
ସେଥିପାଇଁ ତମ 'ବିଦେଶିନୀ' କବିତା
ଏତେ ପ୍ରିୟ
ଏତେ ଆପଣାର ମୋର ।
କେଉଁ ବିଦେଶିନୀ ପାଇଁ
ତମେ ପ୍ରଦୀପ ଜାଳି
ଉତ୍ତରାୟଣର ନୀରବତା ଭିତରେ
କାଟୁଥିଲ କେତେ କେତେ କାଳ
କେତେ ମନ୍ୱନ୍ତର ।

ଏସବୁ କଥାକୁ ମୁଁ
ନା ଲେଖି ପାରିଲି କବିତାରେ
ନା ଯୋଡି ପାରିଲି ଚିତ୍ରରେ ।
ମୁଁ କେବେ ବି ମୁହଁ ଖୋଲି
କହିପାରିନି
ମୁଁ ତୋତେ ଭଲପାଏଁ
ମୋ ପ୍ରିୟ ଶାନ୍ତିନିକେତନ ।
ଆଜିଯାଏ କେବଳ ଘିଅ ଦୀପଟିଏ
ଜଳାଇ ରଖିଛି ଯାହା
ମୋ ହୃଦୟର ଗମ୍ଭୀରା ଭିତରେ ।



## ସାତ

କିଏ ରୋପଣ କରିଥିଲା
ଛୋଟ ଛୋଟ ଗଛରାଗଛ
ସପ୍ତପର୍ଣ୍ଣ, ମାଧବୀ
ବଉଳ ପଳାଶ ଆଉ ଗଙ୍ଗଶିଉଳିର ?
କେଉଁ ବିଦେଶିନୀ ପାଇଁ
ସ୍ମୃତିସ୍ତମ୍ଭ ଥାପିଥିଲ
ହୃଦୟରେ
କେତେ ଶିଶିର ଭିଜା ସକାଳ
କେତେ ପୌଷର ଅପରାହ୍ନ
ଭିଜି ଯାଇଥିବ ତମର
କୋମଳ ଗାନ୍ଧାର ରାଗରେ ।
ସେଥିପାଇଁ ତମ 'ବିଦେଶିନୀ' କବିତା
ଏତେ ପ୍ରିୟ
ଏତେ ଆପଣାର ମୋର ।
କେଉଁ ବିଦେଶିନୀ ପାଇଁ
ତମେ ପ୍ରଦୀପ ଜାଳି
ଉତ୍ତରାୟଣର ନୀରବତା ଭିତରେ
କାଟୁଥିଲ କେତେ କେତେ କାଳ
କେତେ ମନ୍ୱନ୍ତର ।

ଝଡ଼ରେ ଛିନ୍ନଛତ୍ର ହୋଇଯାଇଥିବା
ମାଧବୀ ଲତାଟିକୁ
ଅସୀମ ଭଲ ପାଇବାରେ
ପୁଣିଥରେ
ଲଗେଇଥିଲ ତା ସ୍ଥାନରେ।
ଏଇ ବିଶ୍ୱାସରେ ଯେ
ଦିନେ ନା ଦିନେ
ସେଇ ବିଦେଶିନୀ ଆସି
ଆଉଁଷି ଦେବ ତା ସୁକୁମାର ଦେହକୁ
ଆଖି ଟେକି ପଚାରିବ
ତା ପ୍ରିୟ କବିର କଥା
ପ୍ରିୟ କବିତାର କେତୋଟି ଧାଡ଼ି
ତା ଅଧରରେ ସ୍ଫୁରିତ ହେଉଥିବ
ସେତେବେଳେ।
ମାଧବୀ କୁଞ୍ଜରେ ବସି
ଗାଇବ ସେଇ ସବୁ ପୁରୁଣା ଦିନର କବିତା।
ଆବୃତ୍ତି କରିବ ଯେତେ ସବୁ
ହୃଦୟ ଭିତରେ ସାଇତି ରଖିଥିବା
ପାହାଡ଼ ପାହାଡ଼ ସ୍ୱପ୍ନର ଗୋପନୀୟତା
ସାତ ସମୁଦ୍ର ପାର ହୋଇ ଆସିଲା ବେଳେ
ସେ ଜାଣି ନଥିବ ଶୂନ୍ୟ ଘର
ଶୂନ୍ୟ ଉତ୍ତରାୟଣ
ସବୁକୁ ଶୂନ୍ୟ କରି ଉଡି ଯାଇଛି କବି କଳ୍ପଲୋକକୁ
ସବୁ ସେମିତି ଅଛି।

ପିଆନୋ ତାରରେ
ଟିକିଏ ବି କଳଙ୍କି ଲାଗିନି
ଗୀତଖାତା, ପାଣ୍ଡୁଲିପି
ବହି ସେଲ୍‌ଫ,
ସବୁ ସେମିତି ଅଛି।
ଖାଲି ଯାହା କବି ନାହିଁ।
ଉଡି ଉଡି ଆସିଥିବା
କାହିଁ କେତେ ଦୂରରୁ
'ବିଦେଶିନୀ' ଜଣକ
ଜାଣି ନ ଥିବ ଏତେ ସୁନ୍ଦର କବିତା
ତା ପାଇଁ ଲେଖାହୋଇଛି ବୋଲି।
କାଳ ବି ହାର ମାନିବ
'ବିଦେଶିନୀ' କବିତା ପାଖରେ।

ଛୋଟ ଚଢ଼େଇଟିଏ ଆସି
ଝିଅଟିକୁ ବାରବାର କହୁଛି
"ମୁଁ ତୁମକୁ ଚିହ୍ନିଛି ଚିହ୍ନିଛି
ତୁମେ ରୁହ ସାତ ସମୁଦ୍ର ସେପାଖରେ
ପ୍ରିୟ କବିର ସ୍ମୃତି
ତୁମକୁ ନେଇ ଆସିଛି
ଭାରତକୁ,
ଶାନ୍ତିନିକେତନକୁ।
ପକ୍ଷୀମାନେ ବୁଝିପାରନ୍ତି ସବୁ।
ସେ ହୁଏତ ଦେଖିଥିବ କବିଙ୍କୁ
ଶୁଣିଥିବ କବିର ମନ ଭୁଲାଣିଆ ଗୀତ।
ତାରା ସହ, ଜହ୍ନ ସହ
କେମିତିକା ସଂପର୍କ ପକ୍ଷୀର।
ପକ୍ଷୀଟିଏ ହେଲେ ବି
ସାକ୍ଷୀ ସିଏ ଅନନ୍ତ କାଳର।
ଅସୀମ ସଂପର୍କର।
କେହି ମାପିପାରିନଥିବା
ସୀମାହୀନ ଭଲ ପାଇବାର।



## ଆଠ

ସ୍ୱପ୍ନରେ ଆସୁଥା ଆସୁଥା ତୁ ଶାନ୍ତିନିକେତନ
ପ୍ରତି ରାତିରେ
ମୁଁ ପୁଲକିତ ଆହ୍ଲାଦିତ ହେଉଥାଏଁ
ଅପାର୍ଥିବ ଆନନ୍ଦରେ।
ମୁଁ ଖୋଲିଯାଉଥାଏଁ
ପଦ୍ମର ପାଖୁଡା ପରି
ଆଲୋକ ସ୍ପର୍ଶରେ।
ମୋର ବଞ୍ଚିବା ଯେମିତି
କେତେବେଶୀ ଅର୍ଥପୂର୍ଣ୍ଣ ଆଜି
ବଞ୍ଚିବାରେ ଏତେ ରୋମାଞ୍ଚ
କେମିତି ଆସେ ଏତେ ବର୍ଷ ପରେ।
ଏଇ କାଲିପରି ମନେହୁଏ
ଆଖିରେ ଆଖିଏ
ଆଗ୍ରହ ନେଇ ଆସିଥିଲା
ସାଙ୍ଗରେ ଆଣିଥିଲା
ହାତ ତିଆରି ବଡ଼ି ତରକାରୀ।
'ମଫସଲୀ ମଫସଲୀ' କହି
ସାଙ୍ଗମାନେ ଥଟ୍ଟା କରୁଥିଲେ।
ସେଥିଲା କରୁଣାକର
ଦର୍ଶନ ଛାତ୍ର ଶାନ୍ତିନିକେତନର।

ସମୟ ସୁଅରେ ଠେଲିହୋଇ
କୁଆଡେ ସେ ଚାଲିଗଲା କେଜାଣି
ସିଏ ବି ସ୍ୱପ୍ନରେ ଆସେ ବେଳେବେଳେ।
କିଏ ତାକୁ ନେଇଗଲା କୁଆଡେ
ଠେଲି ଠେଲି।
ଫେରିବାକୁ ବଳ ପାଇଲାନି।
ଅବୁଝା ହୋଇ ସେ ରହିଗଲା
ସମସ୍ତଙ୍କ ପାଖରେ।
କାହାରିକୁ ବୁଝାଇବା ପାଇଁ
ଚେଷ୍ଟା କରି ନାହିଁ।
କେବେବି ସ୍ୱପ୍ନ ନ ସରୁ
ଅସରନ୍ତି ସ୍ୱପ୍ନ ମାନେ ଜୀବନ
ଅସରନ୍ତି ସ୍ମୃତି ମାନେ ଶାନ୍ତିନିକେତନ।



# ନଅ

ଜୀବନର ପ୍ରତିଟି ପୃଷ୍ଠାରେ
ଚିତ୍ରିତ ଶାନ୍ତିନିକେତନ
ରଙ୍ଗବେରଙ୍ଗର ଗୁଣ୍ଡୁଚି
ବହୁରୂପି।
ଭାରି ସୁନ୍ଦର।
ସଂପର୍କ ତ ଆପେ ଆପେ
ଯୋଡି ହୋଇଗଲା
ନଈ ସହ, 'ଖୋଆଇ' 'କୁପାଇ' ସହ
ଉତ୍ତରାୟଣର ଗେଟ୍ ଉପରେ
ଲତାୟିତ
ମାଧବୀ ସହ
ପ୍ରଭାତ ପକ୍ଷୀ ଡାକରେ
ଉଭେଇ ଗଲା
ଆଖିରୁ ନିଦ
ଡାହୁକ ଡାକରେ
ଭୁଲିଗଲି ଜୀବନର
ଯେତେ ଯାହା ଖାଲ ଢ଼ିପ
ଅରମା ଅସଜଡ଼ା
ଝୁରୁଝୁରୁ ସ୍ୱପ୍ନରେ
ସବୁ ସମତୁଲ ହୋଇଗଲା।

ଗେରୁଆ ରଙ୍ଗର ମାଟି
ଆଉଁଷି ଦେଲା
ମୋ ଅନ୍ତକରଣକୁ ।
ପ୍ରତିଟି ଅକ୍ଷର ଯେମିତି ପାଲଟି ଗଲା
ଶବ୍ଦ ପ୍ରତିମାରେ
ସାଧାରଣ ଫୁଲମାନେ ବଦଳିଗଲେ
ରଙ୍ଗବେରଙ୍ଗ ଚିତ୍ରରେ ।
ସାଧାରଣ ଗଛମାନେ
କବିତା ପାଲଟିଗଲେ
କବିତା ଖାତାରେ ।

ଗେରୁଆ ରଙ୍ଗର ମାଟି
ଆଉଁଷି ଦେଲା
ମୋ ଅନ୍ତକରଣକୁ ।
ପ୍ରତିଟି ଅକ୍ଷର ଯେମିତି ପାଲଟି ଗଲା
ଶବ୍ଦ ପ୍ରତିମାରେ
ସାଧାରଣ ଫୁଲମାନେ ବଦଳିଗଲେ
ରଙ୍ଗବେରଙ୍ଗ ଚିତ୍ରରେ ।
ସାଧାରଣ ଗଛମାନେ
କବିତା ପାଲଟିଗଲେ
କବିତା ଖାତାରେ ।



'ଚୈତୀ' ଆଗରେ ବସିଛନ୍ତି କବି ।
ଶାନ୍ତିନିକେତନରେ ରବୀନ୍ଦ୍ରନାଥଙ୍କ ଦ୍ୱାରା
ଏଇ ସ୍ମାରକ ସ୍ଥାପନା କରାଯାଇଥିଲା ।

କେତେକେତେ ସ୍ୱପ୍ନର ଘର
ତିଆରି ହୋଇଗଲା
ମୋ ଅଜଣାରେ
କେତେ ପାପ କେତେ ପୁଣ୍ୟ ଆସି
ଭିଡ କଲେ ମୋ ମନରେ।
ଜୀବନ ସେତେବେଳେ
ପ୍ରେମମୟ ହୋଇଗଲା
ସବୁ ଭଲ ଲାଗିଲା।
ଗୀତରେ ଗୀତରେ
ବାଟ ଚାଲିଲି।
କାହିଁ ଟିକିଏ ବି ଝୁଣ୍ଟିଲିନି।
କି ଲହୁ ଲୁହାଣ ହେଲିନି।
ଶାନ୍ତିନିକେତନ ମୋତେ
ନିଭୃତରେ ଆସି କହିଲା
ଆହୁରି ଭଲପାଆ ଜୀବନକୁ
ଆହୁରି ଖୋଲିଯା
ବିସ୍ତାରିତ ହୋଇଯା
ପଦ୍ମ ଗନ୍ଧରେ ସୁଗନ୍ଧିତ ହେଉ
ସମସ୍ତ ସମୟ
ମୋ ପାଖରୁ ଯାହା ଯାହା
ଚାହୁଁଛୁ ସବୁ ନେଇଯା
ସବୁ ନେଇଯା।



## ଦଶ

ମାମାର ନୋଲକପିନ୍ଧା କାନ୍ଦ କାନ୍ଦ ମୁହଁ
ନିରିମାଖି ପିଇସୀର
ପେଢୁଆ ଆଖିରେ
ଆଦୌ ପଲକ ପଡୁନଥିବା ନିରୀହ ଚେହେରା
ବେଶୀ ବେଶୀ ମନେ ପଡିଲା
ଶାନ୍ତିନିକେତନରେ।
ଗାଁ ପୋଖରୀର ପାଣିଶିଉଳି
କଇଁଫୁଲ, ଛୁଆଦିନ
ବେତକୋଳି, ଜାମୁକୋଳି
ସବୁ ଆସି ଜମାଟ ବାନ୍ଧିଲେ
ମୋ ମନରେ।
ଦୂରରେ ରହି ପ୍ରାର୍ଥନା କଲି ଈଶ୍ୱରଙ୍କୁ
ମାମା, କ୍ଷୀରପା ଦୁହେଁ
ଭଲରେ ରୁହନ୍ତୁ।
ଅବ୍ୟକ୍ତ ଦୁଃଖକୁ ଆଉ କେହି ଯେମିତି
ସେମାନଙ୍କ ସାମ୍ନାରେ ନ ଖୋଲନ୍ତୁ।
ନିଃସନ୍ତାନ ଜୀବନକୁ ନେଇ
ଅଧିକ କେହି ଆଉ ଉଲୁଗୁଣା ନ ଦିଅନ୍ତୁ।
ମୁଁ ଫେରିବା ବେଳକୁ
ଗାଁ ପୋଖରୀର କଇଁ
ସେମିତି ଫୁଟୁଥାଉ।

କଞ୍ଚନ ଗଛ ଡାଳରେ ବସା ବାନ୍ଧିଥିବା
ମା ଚଢ଼େଇଟି ତା ଛୋଟ ଛୋଟ
ଶାବକକୁ ଛାଡି କୁଆଡେ ଉଡି ନ ଯାଉ।
ମଦରଙ୍ଗା ଶାଗ ଖୋଜୁଥିବା ଚୁଣ୍ଡିଆ ମାଆ
ସେମିତି ଖୁସିରେ ରହିଥାଉ
ମୁଁ ଫେରିଯାଇ
ଗପର ଆସର ବସାଇ ଦେବି।
ଶାନ୍ତିନିକେତନର ଗପ
ଶୁଣାଇବି ସମସ୍ତଙ୍କୁ।

ଚୁଣ୍ଡିଆ ମାଆ ପଚାରିବ
ଶାନ୍ତିନିକେତନ ଏମିତି ଫୁଲଟିଏ ଯେ
ଯାହାର ବାସ୍ନାକୁ
ତୁ ସାଇତି ରଖିକୁ ଆଜିଯାଏ।
ପ୍ରଥମ ଥର ଗାଁ' ଛାଡି ଆସିଥିବା
ଡରୁଆ ଡରୁଆ ଆଖିରେ
ଶାନ୍ତିନିକେତନକୁ ଦେଖୁଥିବା ମନରେ
ସ୍ୱପ୍ନସବୁ ଜମାଟ ବାନ୍ଧୁଥିଲା।
ଛାଇ ଆଲୁଅର ଜୀବନ ଭିତରେ
ରବୀନ୍ଦ୍ର ସଙ୍ଗୀତର ହାତଧରି
ବାଟ ଚାଲିବାକୁ ମନହେଲା।
ବାଟରେ କଣ୍ଟା ନ ଥିଲା
ଖାଲ ଢିପ କିଛି ବି ନଥିଲା।

ଦିନର ସବୁ ସମୟ
ସତେଜ ସତେଜ ମନେ ହେଲା
ସକାଳ ପରି।
ଜ୍ୟୋତ୍ସ୍ନାଧୁଆ ଅଧରାତିରେ
ନିଦ ଭାଙ୍ଗିଲେ ଦେଖିଲି
ଜହ୍ନରୁ ଅମୃତ ବର୍ଷୁଛି ସାରା ରାତି।
ମୁଗ୍ଧ ଚକିତ ହୋଇ
ଝର୍କା ପାଖରେ ବସିରହିଲି
ରାତିସାରା ବିନିଦ୍ର ହୋଇ।
କେତେବେଳେ ସକାଳ ଆସି
କବାଟ ଠକ୍‌ଠକ୍ କଲା ଜାଣେନି।
ସମବେତ ସକାଳର ବୈତାଳିକ ଭିତରେ
ପ୍ରାର୍ଥନାମୟ ହୋଇଗଲା ଜୀବନ।

ମୋର ମନେ ହେଲା ଏଭଳି ଦୁର୍ଲଭ ମୁହୂର୍ତ୍ତ
ଆଉ କେବେ ଆସିବନି ଜୀବନରେ।
ଶିଶିର ଭିଜା ସକାଳରେ
ଶାନ୍ତିନିକେତନ ପରସ୍ତ ପରସ୍ତ ହୋଇ
ଖୋଲି ଯାଉଥିବା ମୋ ସାମ୍ନାରେ।
କବିର ତପୋବନ ଶାନ୍ତିନିକେତନ
ମୋତେ ଡାକି ନେଇଗଲା
ସପ୍ତପର୍ଣ୍ଣ ଗଛର ବେଦୀ ପାଖକୁ
ମୁଁ ପ୍ରଣାମ କଲି ସେ ଗଛକୁ
ତାର ପ୍ରତିଟି ଶାଖାକୁ
ତାର ପ୍ରତିଟି ଧୂଳିକଣାକୁ।
ଆର୍ଯ୍ୟଋଷିର ତପୋଭୂମିକୁ।



## ଏଗାର

ରାଜଗିରିରୁ ନାଳନ୍ଦା, ଗିରିଡି
ତାପରେ ଦେଓଘର
ପକ୍ଷୀରାଜ ଘୋଡା ପରି
ବସ୍ ଉଡିଯାଉଥିଲା । ଦିଗରୁ ଦିଗନ୍ତ ।
ଖାଲଢିପ ବଣ ଜଙ୍ଗଲ ।
ସେଥିରେ ମୁଁ ଥିଲି
ମୋ ବାନ୍ଧବୀ ସୁତନୁକା ମଧ୍ୟ ଥିଲା ।
ପଥର ଗାତ୍ରରେ
ଲେଖିବାକୁ ଇଚ୍ଛା ହେଲା
ସୁତନୁକା ନୁହେଁ ।
ଦମୟନ୍ତୀ ନୁହେଁ ।

ଶାନ୍ତିନିକେତନ। ଖାଲି ଶାନ୍ତିନିକେତନ।
ସେଦିନ ମୋ ଜୀବନରେ ପ୍ରଥମ ଥର
ଚିତ୍ରକର ହୋଇଗଲି।
ରାସ୍ତାର ଦୁଇ ଧାରରେ ଥିବା
ବଡ଼ ବଡ଼ ଗଛ ଦେହରେ ଆଙ୍କିଲି
ନଈର ଚିତ୍ର
ଫୁଲର ଚିତ୍ର
ଶାନ୍ତିନିକେତନର ଚିତ୍ର।
ସବାଶେଷରେ ଜହ୍ନକୁ ଚିତ୍ରରେ
ଧରି ରଖିପାରିଲିନି।
ଯେଉଁ ଜହ୍ନ ଉଠିବ ଉଠିବ ହୋଇ
ମେଘ ଭିତରେ
ଲୁଚି ଯାଇଥିଲା ମୟୂରାକ୍ଷୀ ଜଳରେ।

ସମସ୍ତେ ଏକା ସ୍ୱରରେ ଗାଇଲୁ
'ଆମାଦେର୍ ଶାନ୍ତିନିକେତନ
ଆମାଦେର୍ ଶାନ୍ତିନିକେତନ'
ଆମ ସହିତ ମିଶି
ନଈ, ଆକାଶ ଚଢ଼େଇ
ସମସ୍ତେ ଗାଇ ଉଠିଲେ
ଆମାଦେର୍ ଶାନ୍ତିନିକେତନ
ମୟୂରାକ୍ଷୀରେ ସେଇ ସନ୍ଧ୍ୟାରେ
ତାହା ପ୍ରତିବିମ୍ବିତ ହେଲା
ମୟୂରାକ୍ଷୀ ଜଳରେ।



## ବାର

ମୁଁ ଗାଁ'ରୁ ଆସିଛି ବୋଲି
ଶାନ୍ତିନିକେତନ ମୋତେ
ଅନାଉଛି ବିସ୍ମୟରେ।
ମୋ ଗାଉଁଲୀ ଆଖିରୁ
ସେ ପଢ଼ିନେଉଛି ଢେର୍ କଥା
ଯାହା ଯାହା ସେ ଜାଣିବାକୁ ଚାହୁଁଥିଲା
ହୁଏତ ସବୁ ଜାଣିସାରିଲାଣି ଏହା ଭିତରେ।
ଶାନ୍ତିନିକେତନରେ ଜହ୍ନ ଉଠିଲେ
ଗାଁ' ମନେ ପଡୁଛି।
ଶାନ୍ତିନିକେତନରେ କଇଁଫୁଲ ଦେଖିଲେ
ଗାଁ'ର କଳା ଘୁମର ପଦ୍ମ ପୋଖରୀ
ଉଚ୍ଚାଟ କରୁଛି।

ଶାନ୍ତିନିକେତନର ସପ୍ତପର୍ଣ୍ଣ
ମୋ ସହିତ କଥା କହୁଛି ।
ବଡ଼ ବଡ଼ ଶାଳ ଆଉ ଆମ୍ବଗଛମାନେ
ମୋତେ ଦେଖିଲେ
ପତ୍ରର କାନ ହଲାଇ
ଗୀତ ଗାଇଲାପରି ଲାଗୁଛନ୍ତି ।
ତାର କାରଣ ମୁଁ ଜାଣି ସାରିଛି ।
ଯେଉଁଠି ସେମାନଙ୍କ ସାଙ୍ଗଗଛମାନେ
ଅଛନ୍ତି ସେଇ ଶାଳପ୍ରାଂଶୁ ଭରା
ବାଉଁଶବଣ, ବାଦାମ ଜଙ୍ଗଲ ଘେରା
ଗାଁ'ରୁ ଆସିଛି ।
ଗାଁର ମଣିଷମାନେ
ସବୁଦିନ ନିଆରା ଆଉ ବାଆଁରା ।

ଶାନ୍ତିନିକେତନକୁ ଢେର କଥା ମୋର
ପଚାରିବାର ଅଛି।
ଶାନ୍ତିନିକେତନ ହୁଏତ ମୋର ପ୍ରଥମ ପ୍ରେମ
ଯାହାକୁ କେବଳ
ମନର କାଠ ସିନ୍ଦୁକରେ
ରଖିହେବ।
ଏକୁଟିଆ ବେଳେ
ନଡ଼ାଚଡ଼ା କରି ଅନୁଭବି ହେବ।
କାହାରିକୁ ଦେଖାଇ ହେବନି।



# ତେର

ଜୀବନକୁ ପୂରାପୂରି ବୁଝିନଥିବା
ସଂସାରକୁ ପୂରାପୂରି
ଚିହ୍ନି ନ ଥିବା ଝିଅ ଶତରୂପା
ଆତ୍ମଘାତୀ କାହିଁକି ହେଲା ।
ତ୍ରିପୁରାର ଜାହାନ୍ନାରା
ମଣିପୁର ଝିଅ ଭିକ୍ଟୋରିଆ
ସମସ୍ତେ ଉଦାସ ଆଖିରେ
ଆକାଶର ଶୂନ୍ୟତା ଭିତରେ
ହଜି ଯାଇଥିଲେ ।
କେଉଁ ଅଶରୀରି ଆତ୍ମାର ଛାଇ
ଘୁରି ବୁଲୁଥିଲା
ଛାତ୍ରୀନିବାସ ଚୌହଦୀ
ଆରପାଖରେ ।
ବହୁ ଦିନରୁ ଗୋପନ ଦୁଃଖରେ ଘାରି ହେଉଥିବା
ସୁକୁମାର ସରଳ ଗାଉଁଲୀ ଝିଅ ଶତପରୂପାର
ନିସ୍ପନ୍ଦ ଶରୀର
ବିଛଣାରେ ପଡ଼ିଥିଲା ।
କାଠଖଣ୍ଡେ ପରି ।

ଏମିତି ଅଘଟଣ ଘଟି ନଥିଲା କେବେ
ଶାନ୍ତିନିକେତନରେ।
ଶତରୂପା ଅଧିକ ଅଧିକ ସୁନ୍ଦର ଲାଗୁଥିଲା।
ପଦ୍ମର ପାଖୁଡ଼ା ପରି
ସତେଜ ହୋଇଯାଇଥିଲା
ତାର ସାରା ଅବୟବ।
ପାହାଡ଼ ପାହାଡ଼ ଦୁଃଖକୁ ଲୁଚାଇ ରଖିଥିବା
ଫଗୁଆର ମୁହଁ
ପରସ୍ତ ପରସ୍ତ ହୋଇ ଖୋଲିଯାଉଥିଲା।
ସମସ୍ତଙ୍କ ସାମ୍ନାରେ।
ଗତକାଲି ସବୁ ଠିକ୍ ଥିଲା
ହଠାତ୍ କଣ ହେଲା ଏମିତି ଯେ
ମନର ପଦ୍ମବନ ପୋଡିଜଳି ଛାରଖାର ହୋଇଗଲା।
ସେଦିନ ଗୌର ପ୍ରାଙ୍ଗଣରେ
'ବିଦେଶିନୀ' କବିତା
ଆବୃତ୍ତି କଲା ବେଳେ
ସରଳ ସୁକୁମାର ଝିଅଟି କେବେ
ଆତ୍ମଘାତୀ ହୋଇପାରେ
ବିଶ୍ୱାସ ହେଉନଥିଲା।

ଜୀବନକୁ ଭଲନ ପାଇଲେ
ଏତେବଡ଼ ଶାସ୍ତି କିଏ ଦେଇପାରେ
ଜିଦ୍‌ଖୋର ଜୀବନକୁ।
କିଏ ତାକୁ ପ୍ରତାରିତ କରିଛି ବା ନ କରିଛି
କହିଲେ କହିପାରିବ
ବୟସ୍କ ଶପ୍ତପର୍ଣ୍ଣ।

ପଶ୍ଚିମବଙ୍ଗ ପୁରୁଲିଆ ଗାଁ' ଝିଅ ଶତରୂପା
ସରଳ ଅଭିମାନୀ ବୋକୀ ଝିଅ।
ସ୍ୱପ୍ନର ଘର କେତେ ତିଆରି ଥିବ
ଶାନ୍ତିନିକେତନରେ।
ଭାଗ୍ୟକୁ ସେ କଣ ମାଗିଥିଲା କେଜାଣି
ସ୍ୱପ୍ନର କାନ୍‌ଭାସ ଉପରେ
କିଏ ଯେମିତି କାଳି ଛାଟିଦେଲା।
ଦୂରରୁ ଶୁଭୁଛି
'ଆଗୁନେର୍ ପରଶ ମନି'
ଏ ଜୀବନ ପୂର୍ଣ୍ଣ କରୋ"
ଶତରୂପା ଜୀବନ କି ସତରେ ପୂର୍ଣ୍ଣ ହେଲା କି ନ ହେଲା
କିଏ କହିବ।



## ଚଉଦ

ଶିତରୂପା ବହୁବାର ପଚାରିଛି
ତାର ଅନ୍ତରଙ୍ଗ ବାନ୍ଧବୀମାନଙ୍କୁ
ଖୋଆଇ କୂଳର ଅନ୍ଧାରକୁ
ତାରାଭର୍ତ୍ତି ଆକାଶକୁ
ସାର୍ଥକ ମୁହୂର୍ତ୍ତମାନଙ୍କୁ
ବାରବାର କହୁଥିଲା
"ମୁଁ ଭଲପାଏଁ ମଣିଷକୁ
ଫେରିବାକୁ ଇଚ୍ଛା ହୁଏ
ମଣିଷ ପାଖକୁ।
କାହିଁକି ଏମିତି ହୁଏ
ସବୁ ବିଶ୍ୱାସ ଏକାଥରେ
ବିଡ଼ମ୍ବିତ ହୋଇଯାଏ।
ସବୁ ସ୍ୱପ୍ନ ଏକାଥରେ
କାହିଁକି ଅଦୃଶ୍ୟ ହୋଇଯାଏ।

ମୋ ସାମ୍ନାରେ ଅନ୍ଧାରୁଆ ଲମ୍ବାବାଟ
କେମିତି ମୁଁ ପାରିହେବି ଏକାଏକା ।
ଶାନ୍ତିନିକେତନ ମୋତେ ସ୍ୱପ୍ନ ଆଣିଦେଲା ।
କହିଲା - ଭଲପାଅ ଆହୁରି ଭଲପାଅ
ଜୀବନକୁ ।
ମୁଁ ନିଜକୁ ଓଜାଡ଼ିକରି
ଭଲପାଇଲି ।
ମୁଁ ବଡ଼ କ୍ଳାନ୍ତ ଆଜି ।
ମୋତେ ଲାଗୁଛି ଯେମିତି
କାହିଁ କେତେ ବର୍ଷ ହେଲା ଶୋଇନାହିଁ ।
କାହିଁ କେତେ ମନ୍ୱନ୍ତର ହେଲାଣି
ପୃଥିବୀକୁ ଭଲକରି ଦେଖିନାହିଁ ।
ମୁଁ ଚାହୁଁଛି ବିଦାୟ ନେବାକୁ
ମୋ ନିଜ ପାଖରୁ ।
ଶାନ୍ତିନିକେତନରୁ
ପୃଥିବୀରୁ ।



## ପନ୍ଦର

ସପ୍ତପର୍ଣ୍ଣର ନିବିଡ଼ ଇନ୍ଦ୍ରଜାଲର
ସବୁଜ ସମ୍ଭାର
ଟିପିଟିପି ଗଙ୍ଗଶିଉଳିର ବିମୁଗ୍ଧ ସକାଳ।

ପୌଷମେଳା, ବାଉଲ୍‌ର ଏକତାରା
ମଧୁକ୍ଷରା ବସନ୍ତ ଉତ୍ସବ
କବିତା ସନ୍ଧ୍ୟାର ଦିନ
ସପ୍ତପର୍ଣ୍ଣ ଫୁଟିବାର ବେଳ
ପୌଷର ଶାନ୍ତିନିକେତନ।

ଶାନ୍ତିନିକେତନରୁ ସେଦିନ ସାଉଁଟିଲି
ସମୁଦ୍ର ସମୁଦ୍ର ଶ୍ରଦ୍ଧା
ଚିରନ୍ତନ ପ୍ରେମର ବୈଭବ।
ଝର୍‌ଝର୍ ବର୍ଷାରେ
ଆଲିଙ୍ଗନ କଲି ବର୍ଷାକୁ
ଶିଶିର ଭିଜା ସପ୍ତପର୍ଣ୍ଣକୁ।

ମୁଁ ସେଦିନ ଦୀକ୍ଷା ନେଲି
ରବୀନ୍ଦ୍ର ସଙ୍ଗୀତର
ପ୍ରଲୁବ୍ଧ ହେଲି ରବୀନ୍ଦ୍ର ଚିତ୍ରକଳାର
ଲୋକଗୀତର ।

ଆଜି ଭାରି ମନେପଡ଼େ
ସେଇ ସବୁ ସୁବର୍ଣ୍ଣ ସମୟ
ସପ୍ତପର୍ଣ୍ଣ ଫୁଟିବାର
ବିମୁଗ୍ଧ ସକାଳ ।



ମୁଁ ସେଦିନ ଦୀକ୍ଷା ନେଲି
ରବୀନ୍ଦ୍ର ସଙ୍ଗୀତର
ପ୍ରଲୁବ୍ଧ ହେଲି ରବୀନ୍ଦ୍ର ଚିତ୍ରକଳାର
ଲୋକଗୀତର ।

ଆଜି ଭାରି ମନେପଡ଼େ
ସେଇ ସବୁ ସୁବର୍ଣ୍ଣ ସମୟ
ସପ୍ତପର୍ଣ୍ଣ ଫୁଟିବାର
ବିମୁଗ୍ଧ ସକାଳ ।



# ଷୋହଳ

ଶାନ୍ତିନିକେତନର ସବୁ ଝିଅଙ୍କର ଭାଗ୍ୟ
ଶତରୂପା ପରି ନ ହେଉ।
ଶାଳବଣକୁ ବୁଲି ବାହାରିଥିବା
ନୀଳକଣ୍ଠ ପକ୍ଷୀ
ପୁଣି ଫେରିଆସୁ ତା ବସାକୁ।
ଶତରୂପା ମୋର ଅନ୍ତରଙ୍ଗ ବାନ୍ଧବୀ
ନ ହେଲେବି
ଦେଖିଲେ ମାୟା ଲାଗିଯାଉଥିଲା।

ପକ୍ଷୀବସା ପରି ଆଖିରେ ତାର
ସ୍ୱପ୍ନସବୁ ଖୁନ୍ଦାଖୁନ୍ଦି ହୋଇ ରହିଥିଲା।
ନିଷ୍ଠୁର ମଣିଷମାନେ କେବେ ବି ନ ଥିଲେ ଶାନ୍ତିନିକେତନରେ।
କୃଷ୍ଣଚୂଡା, ସୁନାରୀ ଫୁଲରେ
କୋରକିତ ହେଉଥିଲା
ମାଟି ଓ ଆକାଶ।
ଆହା, ଶତରୂପା କାହିଁକି ଏମିତି କଲା।

କ୍ଷମାକର ଈଶ୍ୱର ତାର ଏଇ
ଅବିମୃଶ୍ୟତାକୁ।
ପ୍ରେମ ଆଲୋକିତ ଭୂଖଣ୍ଡ ପରି।
ବାଟ କଢ଼ାଇ ନେଇଯାଏ ଆଗକୁ ଆଗକୁ।
ଅନ୍ୟମନସ୍କତାରେ ମୁଁ ଘାରି ହେଲି ବହୁଦିନ ଧରି
ସ୍ୱପ୍ନ ଦେଖିଲି।

ମୁଁ ପହଞ୍ଚି ଯାଇଛି କେଉଁ ଅଜଣା ଜାଗାରେ
ଯେଉଁଠି ଶତରୂପା ଚିଠି ଲେଖିବା ମୁଦ୍ରାରେ
ବସିଛି ଏକାନ୍ତରେ।
ଆନନ୍ଦ କିମ୍ବା ବିଷାଦର ଚିହ୍ନବର୍ଣ୍ଣ
ନାହିଁ ତା ମୁହଁରେ।
ଦୁଃଖ ଆଉ ବେଦନାରେ
ମୁଁ ଭାଙ୍ଗିପଡୁଥିଲି ମୋ ଭିତରେ।
ଆହା ଶତରୂପା
ସତେଜ ଗଙ୍ଗଶିଉଳି ଫୁଲ ମୁଠାଏ।
ମୃତ୍ୟୁ କଣ ଛୁଇଁ ପାରିଥିବ ତାକୁ କେବେ ?
ଆଦୌ ନୁହେଁ
ଆଦୌ ନୁହେଁ।



## ସତର

ଆଖିରେ ନିଦ ନାହିଁ ଶାନ୍ତିନିକେତନର
ସାଆନ୍ତାଳ ବସ୍ତିରୁ ଶୁଭୁଛି ମାଦଳ
ରାତିର ଚଢ଼େଇମାନେ
ଡେଣା ଝାଡ଼ି ଉଡି ଯାଉଛନ୍ତି କେବଳ।
ଚାରିଆଡେ ଅଶାନ୍ତ ବାତାବରଣ
ନକ୍ସାଲମାନଙ୍କର
ଗୋପନ କାର୍ଯ୍ୟକଳାପ
ଭାରି ଭୟଙ୍କର।
ଗଛମାନେ ନିର୍ବାକ ନିଷ୍ପନ୍ଦ
ଚାରିଆଡେ ଅସନ୍ତୋଷର ନିଆଁ
ଅତ୍ୟନ୍ତ ଅସହ୍ୟ।

ଗତକାଲି ଅଧରାତିରେ
ନିଭୃତ କୋଠରୀ ଭିତରେ
ଚାଲିଥିଲା ମନ୍ତ୍ରଣା ।
ସେଥିରେ ସାମିଲ ଥିଲେ
ସର୍ବାଣୀ, ଭବାନୀ ଆଉ ଜାହାନ୍ନାରା ।
ଶାନ୍ତିନିକେତନରେ ଆଜି
ଘୋର ସଙ୍କଟର ବେଳ
ସବୁଠି ଅବିଶ୍ୱାସର ଚାପାସ୍ୱର ।
ପୋଲିସ ଛାଉଣୀ ଭିତରେ
ଅଣନିଃଶ୍ୱାସୀ ହେଉଛି
ଶାନ୍ତିନିକେତନ ।

କେଉଁ ଆତତାୟୀ ପୋତି ଦେଇଛି
ବିଶ୍ୱାସଘାତକତାର ମଞ୍ଜି
ଏଇ ମାଟିରେ ।
ବୁର୍ଜୁୟାମାନଙ୍କୁ ନିପାତ କରିବା କଥା
କିଏ ଲେଖୁଛି
ଅନ୍ଧାରରେ ।
ଚାରିଆଡେ କର୍ଫ୍ୟୁ
ଚାରିଆଡେ ଅସନ୍ତୋଷର ସ୍ୱର
ହଷ୍ଟେଲ ଖାଲି କରିବାର ପରୱାନା
ତୁରନ୍ତ ଖବର ।

ଦର୍ଶନ ଛାତ୍ର କରୁଣାକର
ସ୍ୱପ୍ନ ଦେଖେ ବଡ଼ ହେବାର ।
ହଠାତ୍ କୁଆଡେ ଯିବ
ଚାରିଆଡେ କର୍ଫ୍ୟୁ
ଚାରିଆଡେ କିଛି ଗୋଟେ
ଭାଙ୍ଗି ଯିବାର ସ୍ୱର ।
ତାପରେ କୁଆଡେ ଗଲା କରୁଣାକର
କାହାଣୀ ହୋଇଗଲା କେହି ଜାଣିଲେନି ।
ସମସ୍ତଙ୍କ ପାଖରେ ।

ଦୀର୍ଘ ବର୍ଷ ପରେ
ଧଉଳିର ନିର୍ଜନ ବିହାରେ
ତପସ୍ୟା କରୁଛି କରୁଣାକର ।
ହୁଏତ ସତ କିମ୍ବା ଗୁଲିଗପ
ସଂସାର ବିରାଗୀ କରୁଣାକର ।
ମୂଳରୁ ସେମିତି ।

କରୁଣାକର କେବେ ଉଗ୍ରବାଦୀ
କିମ୍ବା ନକ୍ସଲ ନ ଥିଲା
କରୁଣାକର କେବଳ କରୁଣାକର ହିଁ ଥିଲା ।
ମୋର ସତୀର୍ଥ
ଦର୍ଶନ ଛାତ୍ର ।
ସେଦିନ ଅସ୍ତ ଗୋଧୂଳୀରେ
ଧଉଳିର ପଥର ଚତ୍ୱର ତଳେ
ଜଟାଜୁଟ ପରିବୃତ୍ତ ବାବାଜୀ ଜଣେ
ମଗ୍ନ ଥିଲେ ପ୍ରବଚନରେ
ଚାଳିଶବର୍ଷ ତଳର କରୁଣାକର
କେବେହେଲେ ନକ୍ସାଲ ନଥିଲା ।
ଏ ପୃଥିବୀ ନୁହେଁ,
ଅନ୍ୟ କେଉଁ ଜଗତର କଥା କହୁଥିଲା ।



## ଅଠର

କି ପ୍ରକାର ପ୍ରବଚନ ଦେଇପାରେ
କରୁଣାକର।
କି ଧରଣର ସଂସାର ବୈରାଗ୍ୟ
ତାକୁ ସମ୍ମୋହିତ କରିପାରେ।
ମୁଁ ବୁଝି ନ ଥିଲି ଏତେକଥା।
ସେଥର ହରିଦ୍ୱାରରେ
ସନ୍ନ୍ୟାସୀମାନଙ୍କୁ ଦେଖି
ମୁଁ ବୁଝିଯାଇଥିଲି
ଜୀବନକୁ ଠକିବାର
ଅଦ୍ଭୁତ କୌଶଳ।
କରୁଣାକର ମୋତେ ଚିହ୍ନିପାରି ନାହିଁ।
ଚିହ୍ନିଥିଲେ ହୁଏତ ପଚାରିଥାନ୍ତା
କେମିତି ଅଛ ମନୋରମା
ଏତେ ବର୍ଷ ପରେ ଦେଖାହେଲା।
ସାଂସାରିକ ମାୟାମୋହ
କରୁଣାକରକୁ
ବାନ୍ଧିପାରି ନାହିଁ।
ଆଜି ତାର କିଛି ଇଚ୍ଛା ନାହିଁ
କିଛି ବି ଅନିଚ୍ଛା ନାହିଁ।

ଅହଙ୍କାର ନାହିଁ
ଶ୍ମଶ୍ରୁମୟ ନିର୍ମାୟା ମୁହଁରେ
ନିଲିପ୍ତ ଚାହାଣୀଟିଏ
ଲାଖି ରହିଛି କେବଳ।

ମୁଁ କାହିଁକି ମାୟା ମୋହ କାଟିପାରୁନାହିଁ
ମୁଁ କାହିଁକି ମାୟା ମରୀଚିକା ପଛରେ
ଦଉଡୁଛି ଅଣନିଃଶ୍ୱାସୀ ହୋଇ
କ୍ଷଣକ ପାଇଁ ହେଲେ ବି
ମୁଁ ଭୁଲିପାରୁନାହିଁ।
ବୁଢ଼ୀଆଣୀ ଜାଲ ପରି ଛନ୍ଦାଛନ୍ଦି
ସଂସାରର ମୋହ ଆଉ ମାୟାର ବନ୍ଧନ
ରାତିରେ ଶୋଇଲା ବେଳେ ବି
ସ୍ୱପ୍ନରେ ଆସୁଛି
ମୋ କମକୁଟ ସଂସାର
କାହା ସହ କାହାର
ମନ ମିଶୁ ନଥିବା
ଦୁଃଖଦ ଖବର।
ଯେତେ ସବୁ ଅଦରକାରି କଥାର
ଅସରନ୍ତି ଫୁଆର।
କରୁଣାକରର
ବେଗହୀନ ଜୀବନ।
ଶୁଖିଯାଇଥିବା ନଈର ଆତ୍ମକଥନ।

ଶାନ୍ତିନିକେତନ ଗୋଟିଏ ସେତୁ
ପ୍ରାଚ୍ୟ ଆଉ ପାଶ୍ଚାତ୍ୟକୁ
ଯୋଡ଼ିଦେଇପାରେ
କେତେ ଚମତ୍କାର ଭାବରେ।
ଦର୍ଶନ ଛାତ୍ର କରୁଣାକର
ସେମିତି ସମ୍ପର୍କିତ ହୋଇଯାଇଥିଲା
ମରିଚିକା ସହିତ।

କରୁଣାକର ସେପରି କିଛି ନ ଥିଲା।
ନିଜ ହାତରେ ରାନ୍ଧି
ସମସ୍ତଙ୍କୁ ନିମନ୍ତ୍ରଣ କରୁଥିଲା ଖାଇବାକୁ।
ଶାନ୍ତିନିକେତନ ତାକୁ ମ୍ନେ ରଖିନି।
ସେ ସକ୍ରେଟିସକୁ ତାର ଗୁରୁ କରିଥିଲା।
ଆହୁରି କେତେ କିଏ ତାର ଗୁରୁଥିଲେ।
ଆଜି ସିଏ ପ୍ରବଚନ ଦେଉଛି
ଏହା ଭିତରେ ସିଏ ଗୁରୁ ପାଲଟି ଯାଇଛି।
ଭଲରେ ଥାଉ କରୁଣାକର
ମୂଢ଼ ମଣିଷମାନଙ୍କୁ
ତାର ପ୍ରବଚନରେ ବଦଳାଇ ଦେଉ କରୁଣାକର।



# ଉଣେଇଶ

କିପରି ମାୟା ଏ ମାଟିରେ ଯେ
ଥରେ ପାଦ ଥାପିଲେ
ବାନ୍ଧି ହୋଇଯାଏ ମନ ତାର ସୁବାସିତ ବାସ୍ନାରେ।
ସପ୍ତପର୍ଣ୍ଣ ଫୁଟିଲେ
ଦିଗ ବିଦିଗରେ ଡେଙ୍ଗୁରା ବାଜେ
ସପ୍ତପର୍ଣ୍ଣ ଫୁଟିଛି।
କେତେ କେତେ ଦିଗହଜା
ରସିକ ଭଅଁର ଆସି
ଚାରିପାଖରେ ଘୁରି ବୁଲନ୍ତି।
ସପ୍ତପର୍ଣ୍ଣର ସୁବାସିତ ବାସ୍ନାରେ ରହିଛି
ଅସୁରୁଣୀ ବୁଢ଼ୀର ସମ୍ମୋହନ।
ସେଠାକୁ ଥରେ ଗଲେ
ଫେରିବା ରାସ୍ତା ବନ୍ଦ ହୋଇଯାଏ
ଆପେ ଆପେ।
ଜନଶ୍ରୁତିରେ ଅଜୟ ତୀରର
କେନ୍ଦୁ ବିଲ୍ୱ
କବିତା ପରିମନେ ହେଉଥିବା
ଦୁଇଟା କାବ୍ୟମୟୀ ନଈ
ଖୋଆଇ, କୁପାଇ।

କିଛି ଦୂରରେ ଜୀବନ ଗତିରେ ଛଳ ଛଳ
ମୟୂରାକ୍ଷୀ ରୂପନାରାୟଣ
ସବୁ ସୁନ୍ଦର ଅନବଦ୍ୟ।
ବଡ଼ିଭୋର
ଉପାସନା ବେଳେ
ପ୍ରାର୍ଥନାମୟ
ହୋଇଯାଏ ସମୟ।

ସିଂହ ସଦନରୁ
ଘଣ୍ଟା ଶୁଭେ
ମନରେ ସଞ୍ଚରିଯାଏ
ବିପୁଳାଚ ପୃଥ୍ୱୀର
ବିପୁଳ ସମ୍ଭାର।
କୁମ୍ଭାଟୁଆ, ଡାହୁକ, ଭଦଭଦଳିଆ
ସଭିଏଁ ଡାକି ଉଠନ୍ତି।
ଏକାବେଳେ।
ସମ୍ମୋହିତ ହୋଇଯାଏମୁଁ
ଅନ୍ତରଙ୍ଗ ଭାବନାରେ
ବାନ୍ଧି ହୋଇଯାଏ ମନ
ସବୁଠି କେବଳ ଅନାହତ ମନ୍ତ୍ରର ଉଚ୍ଚାରଣ
ସବୁଠି କେବଳ ମହାଚେତନାର ଉତ୍ତରଣ
ଶୁଭମୟ ବେଳ ସରସ୍ୱତୀଙ୍କର।

ଭୋର ଆକାଶର ପକ୍ଷୀ ପକ୍ଷୀଣିଙ୍କ
ଉଡ଼ାଣରେ
ଆପେ ଆପେ ଉଡିଯାଏ ମନ ଦୀଗ୍‌ବଳୟ ଆଡ଼େ
ତ୍ରିପଥଗା ନଈ
ଖୋଆଇ, କୁପାଇ
କାଳର କପାଳରେ ଝଟକୁଥିବା
ଅନ୍ତହୀନ ଶାନ୍ତିନିକେତନ
ସ୍ମୃତିର ମଣୋହିଁ ।



# କୋଡ଼ିଏ

ଶାନ୍ତିନିକେତନରେ ମେଘ ଡାକିଲେ
କେତେ କଥା ମନେପଡେ
ଦୂର ଗାଁ ଦଲାଣ ପାଖରେ ବସି
ମାମାର ଗୁମୁରି ଗୁମୁରି
କାନ୍ଦିବା କଥା ମନେପଡେ ବେଶୀ।
ଘରର ଚୌହଦି ଭିତରେ
ମାମାର ବିଷାଦ କି ଉଲ୍ଲାସ
କିଛି ବୁଝା ପଡ଼େନି
କେତେ ବେଶୀ ନିରୀହତାର ବଞ୍ଚିବା।
ଏତେ ମେଘ ଏଇ ଶାନ୍ତିନିକେତନରେ
ଏକାଥରେ ସବୁ ବର୍ଷିଯାଉଛି
ଝର୍କା ସେପାଖର ବର୍ଷାକୁ
ଛୁଇଁ ହେଉନି।
ବର୍ଷା ଆସିଲେ ମୋ ଭିତରେ
ଟିକିଟିକି ପତ୍ର କଅଁଳେ
କୋମଳ ଗାନ୍ଧାର ରାଗ
ମୋ ଭିତରେ ବାଜେ।
ଫୁଲ ଫୁଟିଲେ ଗାଁ ନଈ ମନେପଡେ
ଗାଁ'ର ଲମ୍ବା ଲମ୍ବା
ତାଳଗଛ ବାହୁଙ୍ଗାରେ କମକୁଟକରି
ଘର ସଜାଡ଼ିଥିବା
ବାଇଚଢ଼େଇ ମନେପଡ଼େ।
ସଜଡ଼ା ଘର ଦିନେ ଭାଙ୍ଗିଯାଏ ଝଡ଼ରେ।

ଏଠି ମେଘ ଡାକେ
ରବୀନ୍ଦ୍ର ସଙ୍ଗୀତ ଡାକେ
କୃଷ୍ଣଚୂଡ଼ା ଡାକେ।
ସମସ୍ତେ କହନ୍ତି 'ଆୟ ଆୟ' ମୋତେ।
ମୁଁ କେଉଁଠିକୁ ଯାଇପାରେ ନାହିଁ।
କେମିତି ଯିବାକୁ ହୁଏ ଜାଣେ ନାହିଁ।
ଆକାଶରେ ମେଘ ଦୁଲୁକିଲେ
କିଛି ଆଉ ମନେପଡେ ନାହିଁ
ମାମାର କାନ୍ଦ କାନ୍ଦ ଆଖି
ବେଶୀ ବେଶୀ ମନେ ପଡେ।
ସେତିକି ବେଳେ ମୋ ଛାତି ତଳେ
ଶୁନ୍‌ଶାନ୍ ନଈଟିଏ
ନିଶବ୍ଦରେ ବହିଯାଏ।
ଦମୟନ୍ତୀ କହେ
କେତେ ଚମତ୍କାର ବର୍ଷା ଏଠି
ଭିଜିବାକୁ ଇଚ୍ଛା ହୁଏ।
ଶହ ଶହ ବର୍ଷର ଭାବନାରେ
ମୋ ମନ ଭାରାକ୍ରାନ୍ତ
ଆଜି ଏ ବର୍ଷାରେ,
କୋମଳଗାନ୍ଧାର ରାଗ
ମୋ ମନରେ ବାଜୁଛି କେବଳ।



# ଏକୋଇଶି

ବର୍ଷା ପ୍ରଥମେ ମୋ ହାତ ଧରି ନେଇଯାଇଥିଲା
ଶାନ୍ତିନିକେତନ ପାଖକୁ।
ସପ୍ତପର୍ଣ୍ଣ, ସୁନାରୀ, ବଉଳ
ସମସ୍ତେ ଗୋଟାପଣେ ଓଦାହୋଇ ଯାଇଥିଲେ ବର୍ଷାରେ
ଅନ୍ତେବାସୀ କେତେ ଜଣ
ଗୀତ ଗାଉଥିଲେ ବର୍ଷାରେ ଭିଜିଭିଜି।
ମୁଁ ଅନାଉଥିଲି କେବଳ
ବିସ୍ମୟ ଆଉ ଉଲ୍ଲାସରେ।
ଏଇ କଣ ସେଇ ମୁଗ୍ଧ ଇଲାକା ଯାହାର ନାଁ ଶାନ୍ତିନିକେତନ।
ସବୁ ହରାଇ ପୁଣି ଖୋଜି ପାଇବାର ନାଁ
କଣ ଶାନ୍ତିନିକେତନ।

ଏଇ କଣ କବିଗୁରୁ ରବୀନ୍ଦ୍ରନାଥଙ୍କର
ସବୁ ପାଇଚିର ଦେଶ ଶାନ୍ତିନିକେତନ ?
ସ୍ୱପ୍ନରେ ଅନେକ ଥର ଭେଟ ହୋଇଛି ଶାନ୍ତିନିକେତନ ସହ
ବାସ୍ତବରେ ନୁହେଁ।
ସକାଳ ହେଲେ ସଦାବିହାରୀ ଆଖି ଖୋଲେ
ବୁଲ୍‌ବୁଲ୍ ଆସି ପଦେଅଧେ ଗୀତ
ଗାଇଦେଇ ଚାଲିଯାଏ
ଯେଉଁ ଗୀତ ମୋତେ ରବୀନ୍ଦ୍ର ସଙ୍ଗୀତ ପରି ଶୁଣାଯାଏ।
ଶାନ୍ତିନିକେତନ ମୋତେ କୋଳେଇ ନେବ ଜାଣିଥିଲି
ଜଣେ ସରଳ କବିର ହୃଦୟରେ
ଶାନ୍ତିନିକେତନର ପ୍ରତିଛବି ଛଡ଼ା
ଆଉ କଣ ଥାଆନ୍ତା।
କପଟୀମାନେ ଶାନ୍ତିନିକେତନ ଆସିଲେ
ଜଣେ ଜଣେ ପୂତନା ପାଲଟି ଯାଆନ୍ତି।
ଶାନ୍ତିନିକେତନର ରକ୍ତ ପିଇବା ଛଡ଼ା
ଆଉ କଣ ଜାଣିଥାଆନ୍ତି ସେମାନେ।
ତା ବେକରେ ଗଜରା ପିନ୍ଧାଇ ଭିତରକୁ କୋରି ଖାଉଥାଆନ୍ତି।
ଶାନ୍ତିନିକେତନର ମହାର୍ଘ ଅନୁଭବ ଟିକକ
ମୋ ଭିତରେ ସେମିତି କାଳନିରବଧି
ସାଇତା ହୋଇ ଥାଉ।



ଏଇ କଣ କବିଗୁରୁ ରବୀନ୍ଦ୍ରନାଥଙ୍କର
ସବୁ ପାଇଚିର ଦେଶ ଶାନ୍ତିନିକେତନ ?
ସ୍ୱପ୍ନରେ ଅନେକ ଥର ଭେଟ ହୋଇଛି ଶାନ୍ତିନିକେତନ ସହ
ବାସ୍ତବରେ ନୁହେଁ।
ସକାଳ ହେଲେ ସଦାବିହାରୀ ଆଖି ଖୋଲେ
ବୁଲ୍‌ବୁଲ୍ ଆସି ପଦେଅଧେ ଗୀତ
ଗାଇଦେଇ ଚାଲିଯାଏ
ଯେଉଁ ଗୀତ ମୋତେ ରବୀନ୍ଦ୍ର ସଙ୍ଗୀତ ପରି ଶୁଣାଯାଏ।
ଶାନ୍ତିନିକେତନ ମୋତେ କୋଳେଇ ନେବ ଜାଣିଥିଲି
ଜଣେ ସରଳ କବିର ହୃଦୟରେ
ଶାନ୍ତିନିକେତନର ପ୍ରତିଛବି ଛଡ଼ା
ଆଉ କଣ ଥାଆନ୍ତା।
କପଟୀମାନେ ଶାନ୍ତିନିକେତନ ଆସିଲେ
ଜଣେ ଜଣେ ପୂତନା ପାଲଟି ଯାଆନ୍ତି।
ଶାନ୍ତିନିକେତନର ରକ୍ତ ପିଇବା ଛଡ଼ା
ଆଉ କଣ ଜାଣିଥାଆନ୍ତି ସେମାନେ।
ତା ବେକରେ ଗଜରା ପିନ୍ଧାଇ ଭିତରକୁ କୋରି ଖାଉଥାଆନ୍ତି।
ଶାନ୍ତିନିକେତନର ମହାର୍ଘ ଅନୁଭବ ଟିକକ
ମୋ ଭିତରେ ସେମିତି କାଳନିରବଧି
ସାଇତା ହୋଇ ଥାଉ।



## ବାଇଶି

ସେଦିନ ମୋ ସାମ୍ନାକୁ ଲମ୍ବି ଆସିଥିଲା
ନିବିଡ଼ ଆନ୍ତରିକତାର ହାତ ଶାନ୍ତିନିକେତନର।
ଜଣେ କବି ପାଇଁ ଏହାଠୁଁ ବଡ଼ ପ୍ରାପ୍ତି
ଆଉ କଣ ଥାଇପାରେ ଜୀବନରେ।
ମୁଁ କାହିଁକି ଆସିଲି ବୋଲି ପଚାରୁଛ।
ମୁଁ ଏତିକି କେବଳ କହିବି
ଯେଉଁ ସ୍ୱପ୍ନଟିକୁ
ସଯତ୍ନରେ ଲାଳନ କରୁଥିଲି ମୋ ଭିତରେ
ମୁଁ ତାରି ପାଖକୁ ଆସିଛି
ଏତେ ଦୀର୍ଘ ବର୍ଷ ପରେ।
ଦେଖୁନ,
କେମିତି ସ୍ୱପ୍ନର ଉଜ୍ଜଳତା
ସାରା ଚେତନାକୁ ମୋର ବୈଦୂର୍ଯ୍ୟମୟ କରିଛି।
ଏବେ ଏଠି ବର୍ଷା ଋତୁ।
ଶାନ୍ତିନିକେତନର ମାଟି
ପୁଷ୍ପିତ ହୋଇଯିବ କବିତାରେ।
ବାଷ୍ପମୟ ହୋଇଉଠିବ
ନଦୀ, ଅରଣ୍ୟ, ମୟୂରାକ୍ଷୀର ଜଳଭଉଁରୀ।
ଏଥର ସପ୍ତପର୍ଣ୍ଣ ଫୁଟିବ।

ସପ୍ତପର୍ଣ୍ଣ ଫୁଟିଲେ
ଅଭିମାନ, ଅନୁରାଗ ସବୁ ଜମାଟ ବାନ୍ଧିବ
ଆମ ଭିତରେ।
ମୁଁ କହିବି, ମୁଁ ଏଠି ଭଲ ଅଛି।
ପୃଥିବୀ କ୍ରମଶଃ ଛୋଟ ହୋଇ ଯାଉଥିବାର
କଥା ତମେ ଚିଠିରେ ଲେଖିବ।
କୁହ, କେବେ ଆସିବ ଶାନ୍ତିନିକେତନ।
ଆସିଲେ ଘଡ଼ିଏ ଏକାଠି ବସିବା।
ଫୁଲ ସହ, ଗଛ ସହ
ଯୋଡ଼ି ହୋଇଯିବା।
ବହୁ ଦିନରୁ ଭୁଲି ଯାଇଥିବା ଗୀତଟିକୁ
ବାରମ୍ବାର ଦୋହରାଇ ଖୁସି ହେବା।
ଚାରିଆଡେ ବୁଣି ବାଣି ପଡିଥିବା ସୁକୁମାର ସ୍ୱପ୍ନ ସବୁକୁ
ସାଇତି ରଖିବା।



## ତେଇଶି

ବିଶ୍ୱାସ ସମସ୍ତଙ୍କ ମନରେ ଘର ବାନ୍ଧିଛି
ବିଶ୍ୱାସକୁ ଗଳାମାଳି କରି, ଗଣ୍ଠିଧନ କରି
ସମସ୍ତେ ଆତଜାତ ହୁଅନ୍ତି ଏଠି।
ଆତତାୟୀମାନଙ୍କ କଥା
କେବେ ବି ସ୍ୱପ୍ନରେ ଭାବିପାରନ୍ତି ନାହିଁ ଏମାନେ।
ଅବିଶ୍ୱାସ, କାହାରି ଭିତରକୁ
ପଶିପାରେ ନାହିଁ କେମିତି କେଜାଣି
ସମସ୍ତେ ଦେହ, ମନ କିଳି ଦେଇଛନ୍ତି
ସେଥିପାଇଁ ଯେମିତି।
କବି ମଣିଷଟିଏ ବଞ୍ଚେ ଏଠି କବିପରି।
ଶିଳ୍ପୀଟିଏ ବୁହାଇ ଦେଇପାରେ ଫଲ୍‌ଗୁରେ ବନ୍ୟା
ମରୁଭୂମିରେ।
ସେଥିପାଇଁ ତ ଏ ମାଟି ମୋର ଏତେ ନମସ୍ୟ।
ଶାନ୍ତିନିକେତନର ମାଟି କଣ
ସାଧାରଣ ମାଟି ହୋଇପାରେ।
ଶାନ୍ତିନିକେତନ କେତେ ବଦଳି ଯାଇଛି
ଆମେ ସମସ୍ତେ ମିଶି ତାକୁ ବଦଳାଇ ଦେଇଛୁ।
ଚାରିଆଡେ ଅବିଶ୍ୱାସର ଶବ ହୋଇ ଝୁଲୁଛି
ସମସ୍ତଙ୍କ ସାମ୍ନାରେ।

ବୋମା ପଡ଼ିବାର ଶବ୍ଦରେ
ଶାନ୍ତିନିକେତନର ହୃତ୍‌ପିଣ୍ଡ ଥରି ଯାଉଛି
ଏଇଠି ପାଖରେ କେଉଁଠି ଶବ୍ଦ ଶୁଭୁଛି
ସଂନ୍ତ୍ରସ୍ତ, ଗଛପତ୍ର ସବୁ ଭୀତତ୍ରସ୍ତ
ରାତି ହେଲେ
ଚୈତ୍ର ପବନର ନିଃଶ୍ୱାସ ଗାଢ଼ ହେଲେ
ମାଦଳ ଆଉ ବାଜୁନି ସାନ୍ତାଳ ବସ୍ତିରୁ।
ଗଛମାନଙ୍କ ଚେହେରାରେ ବାର୍ଦ୍ଧକ୍ୟ
ଫୁଲ ଆଉ ଫୁଟୁନି
ବଗିଚାରେ କି ରାସ୍ତା ଧାରରେ।
ଚୈତ୍ର ପବନରେ
ଭାସିଆସୁନି ମାଦଳର ଶବ୍ଦ
ସାନ୍ତାଳ ବସ୍ତିରୁ।



# ଚବିଶି

ବର୍ଷାର ନୂପୁର ବାଜୁଥିବ ଅନବରତ
ଶାନ୍ତିନିକେତନ ମାଟିରେ।
ଝଡ଼ ପବନ
ଉଡ଼ାଇ ପାରିବନି ଶାନ୍ତିନିକେତନ ସ୍ମୃତି।
ମୁକ୍ତା ପରି ଝଟକୁଥିବ ସେ ସ୍ମୃତି
ଅଧିକ ଅଧିକ ମନର ଗମ୍ଭୀରାରେ।
ଇଚ୍ଛାହୁଏ ବେଳେବେଳେ
ଦେଖନ୍ତି ଯାଇ
କେମିତି ଅଛି ପ୍ରିୟ ଶାନ୍ତିନିକେତନ।
କେମିତି କପଟପାଶାର ଖେଳ
ଖେଳୁଛନ୍ତି ଖେଳୁଆଡମାନେ।
ତା ଚାରିପାଖରେ।
ବିମର୍ଷ ଚାହାଣୀରେ
ଆତଙ୍କରେ
ଅହର୍ନିଶି ଘାରି ହେଉଛି
ଶାନ୍ତିନିକେତନ।
ସେ ହସିପାରୁନି ଖୁସିରେ
କି କାନ୍ଦିପାରୁନି ଦୁଃଖରେ
ଏମିତି ଅସହାୟତା ଭିତରେ
କେତେଦିନ ଘୋଷାରି ହେଉଥିବ
ଶାନ୍ତିନିକେତନ।

ତୁମେ ମୋତେ ସେଦିନ
ଡାକୁଥିଲ ଯିବା ପାଇଁ ଶାନ୍ତିନିକେତନ
କେମିତି ଯାଇଥାଆନ୍ତି
ମୁଁ ସହିପାରି ନଥାନ୍ତି
ପ୍ରିୟ ଶାନ୍ତିନିକେତନର
ନିର୍ବାସନ।
ସେ ତ ପଣବନ୍ଦୀ ଆଜି
ଅସଂଖ୍ୟ ଦଲାଲମାନଙ୍କର।
ସ୍ୱପ୍ନରେ ବି କେବେ
ଭାବିନଥିଲି
ଚୋର ତସ୍କର
ଏବଂ ଦଲାଲମାନଙ୍କର
ଅଭୟାରଣ୍ୟ ହେବ
ଶାନ୍ତିନିକେତନ।

ଏଠି ଏଇ ତସ୍କରମାନେ
ଖୋଲାଖୋଲି
ଭାବରେ ବୁଲନ୍ତି
ନିର୍ଭୟରେ।

ଜୀବନର ଝଡ଼ଝଞ୍ଜା
ପୋଛି ପାରିନି
ଶାନ୍ତିନିକେତନର ନିର୍ମଳ ସ୍ମୃତି
ମୋ ମନରୁ ।
ପ୍ରବଞ୍ଚକମାନଙ୍କ ପ୍ରତାରଣାରେ
ମୁଁ ମ୍ରିୟମାଣ ହୋଇ
ପ୍ରାର୍ଥନାର ହାତ ଟେକି ଦେଇଛି ଉପରକୁ
ଯେ ଆଉଥରେ ନୂଆ କରି ଫୁଲଫୁଟୁ
ଆଉଥରେ ନୂଆ କରି
ମଣିମୁକ୍ତା ଖଚିତ ସ୍ମୃତିରେ
ଶାନ୍ତିନିକେତନ
ଉଦ୍‌ଭାସିତ ହେଉ ।



# ପଚିଶି

ଆଉ ଥରେ ଫେରି ଯିବିକି
ଶାନ୍ତିନିକେତନ ପାଖକୁ
ଯେଉଁଠୁ ସେଦିନ ବିଦାୟ ନେଇ ଆସିଥିଲି
ଧାନ ଫୁଲ ଗାଁକୁ।

କବିତା ପଢ଼ିଲି ଶାନ୍ତିନିକେତନରେ ରବୀନ୍ଦ୍ରନାଥଙ୍କର
ସାରଳା ଦାସଙ୍କର, ମାନସିଂହଙ୍କର
ରବୀନ୍ଦ୍ର ସଙ୍ଗୀତ ସବୁ
ବହି ଥାକରେ କର୍ପୂର ଦେଇ
ସଜାଡ଼ି ରଖିଲି।

ସେଦିନ ଆସିଲା ବେଳେ
ଆପେ ଆପେ ଚାଲି ଆସିଥିଲା ମୋ ସାଙ୍ଗରେ
ହରିଦ୍ରାଭ ସୂର୍ଯ୍ୟାସ୍ତର ରଙ୍ଗ
କବି ପ୍ରସନ୍ନ ମିଶ୍ରଙ୍କ ମନିକାମାନଙ୍କର
ପ୍ରେମ ଅନୁରାଗ।

ଗେରୁଆ ରଙ୍ଗ ଶାଢ଼ୀରେ ଅପୂର୍ବ ଦିଶୁଥିବା
ମନିକାମାନେ
କିଏ କୁଆଡ଼େ ଚାଲି ଗଲେଣି
ଶାନ୍ତିନିକେତନରୁ ।

ଏବେ ବି ଖୋଜିବା ସରି ନାହିଁ କବିଙ୍କର
କେଉଁଠି ଲୁଚିଛି ତାଙ୍କ ପ୍ରିୟ ମନିକା
ଶାନ୍ତିନିକେତନରେ
ନା ଗୃଧ୍ରକୁଟ ପର୍ବତରେ
ନା ବରଫଘେରା ସିମ୍ଲାରେ ।



## ଛବିଶି

ସେ ମାଟିରେ ଚିତ୍ରିତ ଦୁଇଟି ନଈ
ଖୋଆଇ କୁପାଇ।
କମକୁଟ ପତ୍ରରେ ସୁଶୋଭିତ ଶପ୍ତପର୍ଣ୍ଣି।
ପାରିଜାତର ବାସ୍ନାମୟ ବାଟ
ମହକୁଥାଏ ଦିଗରୁ ଦୀଗନ୍ତ।
ଶରତ ଋତୁର ଜହ୍ନ
ଓଦା କରି ଆଖିପତା
ରବୀନ୍ଦ୍ର ସଙ୍ଗୀତର ଅନ୍ତରା
ମୁଖସ୍ତ କରୁଥାଏ ଅନବରତ।
ସେହି ମନ୍ତ୍ରସିଦ୍ଧ ମାଟିକୁ ସେଦିନ
ପ୍ରଣାମ କରି ବିଦାୟ ମାଗିଲି।
ଫେରିବାର ବେଳ ହୋଇଗଲା ବୋଲି କହିଲି।
କହିଲି, ହୁଏତ ଆଉ କେବେ ଆସିବି।
ସେଦିନ ହୁଏତ ଆକାଶରେ ଉଡୁନଥିବ ଶଙ୍ଖଚିଲ
ସେଦିନ ହୁଏତ ଶପ୍ତପର୍ଣ୍ଣିରେ
ଆଉ ଫୁଲ ଫୁଟୁନଥିବ।
ଶଙ୍ଖଚିଲ ଆକାଶରେ
ଉଡୁଥିଲା ସେତେବେଳେ।

ମୋତେ ଶୁଣାଗଲା
ଶଙ୍ଖଚିଲ କହୁଛି ଯେମିତି
ଆଜି ନୁହେଁ ଆଜି ନୁହେଁ
ଫେରିବ ନିଶ୍ଚୟ ତମେ ଅନ୍ୟ କେଉଁଦିନ।
ହାତ ଧରାଧରି ହୋଇ
ଗୀତ ଗାଉଥିବା
ଅନ୍ତେବାସିନୀ।
ମୋ ଝର୍କା ପାଖରେ ଥିବା
ପ୍ରିୟ ଗଛଟି
ଉପୁଡି ପଡିଥିବ ଝଡ଼ରେ।
କୁହୁଡି ଘେରା ଜୀବନ ଭିତରୁ
ମୁକ୍ତି ପାଇ ମୁଁ କେବେ କଣ
ଆସିପାରିବି ଏଇ ତୀର୍ଥଭୂମିକୁ।

ଏଇ ଦୀର୍ଘ ସମୟ ଭିତରେ
ମୁଁ ମନମାରି ବସିଛି
କେବେ ତ ଖୁସିରେ ବିଭୋର ହୋଇ
ବସିଛି ଏଇ ଗଛ ମୂଳରେ।
ଗଛର ସ୍ପନ୍ଦିତ ହେବାର
ଶବ୍ଦ ମୁଁ ଶୁଣିଛି।
ପତ୍ରର କଂପନରୁ।
ସ୍ଫୁରିତ ଶାଖା ପ୍ରଶାଖାରୁ।
ସମୟ ହୁଏତ ଭୁଲିଯିବ ମୋତେ
ଓଡ଼ିଆ କବି ଜଣେ ପାଦ ଥାପିଥିଲା
ଏଇ ଶାନ୍ତିନିକେତନ ମାଟିରେ ।



## ସତେଇଶି

ଦୀର୍ଘ ଏତେ ବର୍ଷର ଏଇ ଅନ୍ୟମନସ୍କତା
ଛାଡିବା ସମ୍ଭବ ନୁହେଁ।
ଯେମିତି ସମ୍ଭବ ନୁହେଁ
କୋମଳ ଗାନ୍ଧାର ରାଗର
ଆଳାପକୁ
ମନରୁ କାଢ଼ି ଫିଙ୍ଗିଦେବା।
ଯାହା ଏତେ ବର୍ଷ ଧରି
ବାଜି ଚାଲିଛି ଅନବରତ
ମୋ ଭିତରେ।

ଶାନ୍ତିନିକେତନର କବିତାର ପୃଥିବୀ ଭିତରେ
ନୀରବତାର ହାତ ଧରି
ମୁଁ ଡାକି ଆଣିଥିଲି ରବୀନ୍ଦ୍ର ସଂଗୀତକୁ
ମୋ ପାଖକୁ।
ବଡ଼ ଝାପ୍‌ସା ଦେଖାଗଲାଣି
ସେ ଚିତ୍ରସବୁ।
ଯାହା ସବୁ ଖୋଦିତ ହୋଇ ରହିଥିଲା
ଶାନ୍ତିନିକେତନର ପତ୍ରରେ, ଫୁଲରେ।
ଚାହୁଁ ଚାହୁଁ କେମିତି ହଜିଗଲା
ବାଟିକ୍ ମହମ ମଖା
ସେଦିନର ପଟ୍ଟଚିତ୍ର।
ରଙ୍ଗବେରଙ୍ଗୀ ଝିଅଙ୍କର ରବୀନ୍ଦ୍ର ସଂଗୀତର କୋରଶ।
ଶାନ୍ତିନିକେତନ ବଦଳି ନାହିଁ।
ସମୟ ବଦଳି ଯାଇଛି।
ତଥାପି କୋମଳଗାନ୍ଧାର ରାଗର ଆଳାପ
ସେମିତି ବାଜି ଚାଲିଛି
ଆଗପରି
ମୋ ଭିତରେ।
ଦୀର୍ଘ ଏତେ ବର୍ଷ ପରେ।



# ଅଠେଇଶି

ପଚାରିଲ ଯଦି ଶୁଣ
ବଂଶୀସ୍ୱନ ଶୁଣିବା ପାଇଁ
କି ମାଦଳ ଶବ୍ଦରେ
ବିଭୋର ହେବା ପାଇଁ
ଶାନ୍ତିନିକେତନ ଯାଅ ନାହିଁ।
ପ୍ରେମକୁ ପ୍ରଶ୍ନ କରନାହିଁ
କି ଭଲ ପାଇବାକୁ ପରଖ ନାହିଁ
ପଥର ପାଲଟି ଯିବ
ଲୋକକଥାର ରାଜକୁମାର।
ଶାନ୍ତିନିକେତନରେ ଗୋଟିଏ ସୁନ୍ଦର ଗଛ ଅଛି
ନାମ ତାର ସପ୍ତପର୍ଣ୍ଣ।
ସୁବର୍ଣ୍ଣ ଧାରଟିଏ ନଈର
ବହିଯାଉଛି ଶାନ୍ତିନିକେତନ
ମାଟିକୁ ଛୁଇଁ
ତା ନାଁ 'ଅଜୟ'।
ପାରିବ ଯଦି କିଛି ବେଳ
ଗଛ ତଳେ ବସି
ଧ୍ୟାନସ୍ଥ ହୁଅ।

'ଅଜୟ' କୂଳରେ ବସି
ରବୀନ୍ଦ୍ର ସଙ୍ଗୀତର ଅନ୍ତରା
ନଈକୁ ଶୁଣାଅ।
ସବୁ ଚୋରି ହୋଇଗଲା ବୋଲି
ଝୁରି ପଡିଛି ସେଠି।
କିଏ ଅବା ଚୋରାଇ ପାରିବ
ରବୀନ୍ଦ୍ର ଭାବନାକୁ ?
ହଳଦିଆ ଶାଢୀରେ ଦେହକୁ
ଘୋଡାଇ ଯେଉଁ ସୁନାରି ଗଛଟି
ଠିଆ ହୋଇଛି
ବିନୀତ ହୋଇ
ତାର ଅତି ନିକଟରେ
ସମସ୍ତଙ୍କ ଅଗୋଚରରେ
ତିଆରି ହୋଇଗଲାଣି
ଗୋଟିଏ ସୁନ୍ଦର କଳ୍ପଲୋକ
ଯେଉଁଠାରୁ ପୁଣି ନୂଆ କରି ଆରମ୍ଭ ହେବ
ବିଶ୍ୱନୀଡ଼ର ସ୍ୱପ୍ନ।
ମୋର ଆଜି ଆଉ କିଛି କହିବାର ନାହିଁ
ଖାଲି ଅପେକ୍ଷା କରିବାର ବେଳ
ଗୋଟିଏ ଶୁଭ ମୁହୂର୍ତ୍ତର।



'ଅଜୟ' କୂଳରେ ବସି
ରବୀନ୍ଦ୍ର ସଙ୍ଗୀତର ଅନ୍ତରା
ନଈକୁ ଶୁଣାଅ।
ସବୁ ଚୋରି ହୋଇଗଲା ବୋଲି
ଝୁରି ପଡିଛି ସେଠି।
କିଏ ଅବା ଚୋରାଇ ପାରିବ
ରବୀନ୍ଦ୍ର ଭାବନାକୁ ?
ହଳଦିଆ ଶାଢୀରେ ଦେହକୁ
ଘୋଡାଇ ଯେଉଁ ସୁନାରି ଗଛଟି
ଠିଆ ହୋଇଛି
ବିନୀତ ହୋଇ
ତାର ଅତି ନିକଟରେ
ସମସ୍ତଙ୍କ ଅଗୋଚରରେ
ତିଆରି ହୋଇଗଲାଣି
ଗୋଟିଏ ସୁନ୍ଦର କଳ୍ପଲୋକ
ଯେଉଁଠାରୁ ପୁଣି ନୂଆ କରି ଆରମ୍ଭ ହେବ
ବିଶ୍ୱନୀଡ଼ର ସ୍ୱପ୍ନ।
ମୋର ଆଜି ଆଉ କିଛି କହିବାର ନାହିଁ
ଖାଲି ଅପେକ୍ଷା କରିବାର ବେଳ
ଗୋଟିଏ ଶୁଭ ମୁହୂର୍ତ୍ତର।





ଗୋୟଙ୍କା ମହିଳା ଛାତ୍ରାବାସ ସାମ୍ମୁଖରେ ଥିବା ଶିଳ୍ପୀ ରାମକିଙ୍କର ବେଜଙ୍କ ଦ୍ୱାରା ନିର୍ମିତ
ସ୍ଥାପତ୍ୟ ଆଗରେ କବି ମନୋରମା

## ଅଣତିରିଶି

ପୃଥିବୀରେ ଯେତେ ବିଶ୍ୱାସ ଅଛି
ଯେତେ ପ୍ରତ୍ୟୟ ଅଛି
ଯେତେ ସ୍ୱାଭିମାନ ଅଛି
ସବୁ ଫେରିଯାଉ
ଶାନ୍ତିନିକେତନ ପାଖକୁ।
ଆଗପରି ଆକାଶଭରା
ସୂର୍ଯ୍ୟ ତାରାଙ୍କ ଗହଣରେ
ଅନ୍ତେବାସୀମାନଙ୍କର ପ୍ରାର୍ଥନା
ଡାକି ଆଣୁ ମେଘମୟ ବେଳ
ସ୍ୱପ୍ନଭରା ଜୀବନ।

ସବୁ ପିଲାମାନେ ସବୁଦିନ ସ୍ୱପ୍ନର କୁହୁକ
ଜାଲରେ ଛନ୍ଦି ହୋଇ
ଆହୁରି ଆହୁରି ଭଲ ପାଆନ୍ତୁ ଜୀବନକୁ।
ଭଲ ଭଲ ସ୍ୱପ୍ନ ଦେଖନ୍ତୁ ପ୍ରତିରାତିରେ।
ମୁଁ ସେଠାକୁ ଗଲାବେଳକୁ
ହଳଦୀ ରଙ୍ଗ ଫୁଲରେ
ଛାଇ ଯାଉଥାଉ ସବୁ ଫୁଲଗଛ
ମୟୂରମାନେ ମେଘକୁ ଡାକି ଆଣନ୍ତୁ ଇସାରାରେ।
ମାଆମାନେ ଝିଅମାନଙ୍କ ମନରେ
ପୁରୁଣା ସଣ୍ଡୁଣାର ପଡିଆରା ଆଣି ଦିଅନ୍ତୁ
ଯାହାକୁ ଖୋଜିବା ପାଇଁ କେତେ ପ୍ରେମିକ ଆଜି
ଦେଶାନ୍ତରୀ ହୋଇ ଯାଇଛନ୍ତି।
ତମକୁ ଡାକି ସେଦିନ କହିଲି
ଆସ ଶାନ୍ତିନିକେତନ ଯିବା।
ଯେଉଁ ମନ ତମର ଯଖମ ହୋଇ ଯାଇଛି
ଆପେ ଆପେ ଯୋଡି ହୋଇଯିବ।

ଜୀବନ ଉପରେ ତମର ବିଶ୍ୱାସ ନାହିଁ।
ମଣିଷମାନଙ୍କୁ ସନ୍ଦେହ କରୁଛ।
ଅସୂୟା ତମ ମନକୁ କଣାକରି ଦେଲାଣି
ତଥାପି ଚାଲ ଶାନ୍ତିନିକେତନ
ଆପେ ଆପେ ସବୁ ଭଲ ହୋଇଯିବ।



# ଟିରିଶି

ସଙ୍ଗୀତ ଭବନର କାନ୍ଥକୁ ଆଉଜି
ଛିଡା ହୋଇଥିବା ଜାମୁକୋଳି ଗଛଟି
ସ୍ମୃତିସ୍ତମ୍ଭ ପାଲଟି ଯାଇଛି ଆଜି
ମୋ ଭିତରେ।

ଜାମୁଡାଳର ପତ୍ର ସନ୍ଧିରେ
ଛୁଆ ଗୁଣ୍ଡୁଚି ଖେଳରେ ବିଭୋର
ହୋଇଯାଉଥିଲା
ତାରି ଭିତରେ ମୋ ବିଶ୍ୱାସ
ମୋ ଭଲ ପାଇବା
ଦିକିଦିକି ହୋଇ ଜଳୁଥିଲା
ଅତି ନିଭୃତରେ।

ଶାନ୍ତିନିକେତନରେ ନୀରବତା ଛାଇଗଲେ
ମୂର୍ତ୍ତିମାନେ ଆପେ ଆପେ
ଉଠିଆସି ଗପ କରନ୍ତି
ଚନ୍ଦ୍ର କିରଣରେ।।

ପାତାଳ ଭେଦି ନୀରବତା ଭିତରେ
ଜାମୁକୋଳି ଗଛଟି ସେମିତି
ଛିଡା ହୋଇଥାଏ
ନିଜ ଗରିମାରେ।

ନୀରବତା ଆଖିରୁ ଖସୁଥାଏ
ଅସୁମାରୀ ଅଶ୍ରୁ
ମଝି ରାତିରେ।।

ସେଇ ଅଶ୍ରୁ ମୁକ୍ତା ହୋଇଯାଏ ସକାଳକୁ
ଶାନ୍ତିନିକେତନ ଗେରୁଆ ମାଟିରେ।
ସଙ୍ଗୀତ ଭବନ କାନ୍ଥରେ
ଆଜିବି ଅସୁମାରୀ ସ୍ମୃତିଚିହ୍ନ
ସେ ସ୍ମୃତି ମୋ ପ୍ରିୟ ଦମୟନ୍ତୀ ସ୍ମୃତି
ଯାହା କଣ୍ଠରୁ ଅନବରତ ଶୁଭୁଥିଲା
ମାଲକୋଶ୍ ସ୍ୱର।

ପାରିଜାତ ଫୁଟୁଥାଉ କଳା ଭବନରେ
ଦମୟନ୍ତୀ କଣ୍ଠରୁ ଝରି ପଡୁଥାଉ
ଆଗପରି ମାଲ୍‌କୋଶ ସ୍ୱର।
ନିସ୍ତବ୍ଧ ରାତିରେ।

ଜ୍ୟୋସ୍ନାପାନ କରି ଶାନ୍ତିନିକେତନ ଶୋଇ ରହୁ
ନିଘୋଡ ନିଦରେ।
ସବୁ ସେମିତି ରହିଥାଉ
କିଛି ବି ବଦଳି ନ ଯାଉ
ଶାନ୍ତିନିକେତନ ଭିତରେ ବାହାରେ।



## ଏକତିରିଶି

ସପ୍ତପର୍ଣ୍ଣ କେବଳ ଶାନ୍ତିନିକେତନରେ ହିଁ ଫୁଟେ
ସୁନାରୀ ଫୁଲରେ ମଣ୍ଡି ହେଲେ
ଶାନ୍ତିନିକେତନ
ପିଲାଦିନ, ପିଲାଦିନ ବାସେ।
ସେମିନାର, କବିତା ଉତ୍ସବ
ସବୁ ଆଜି ଉପଲକ୍ଷ
ବିଗତ ଦିନର ଛାତ୍ରାବାସ
ଝରକା ପାଖରେ
ଟଗର ଓ ତରାଟର ଛାଇ
ସବୁ ପାଇଚିର ଦେଶ ନାଁ ଶାନ୍ତିନିକେତନ

ସପ୍ତପର୍ଣ୍ଣ କେବଳ
ଶାନ୍ତିନିକେତନରେ ହିଁ ଫୁଟେ
ସେଦିନ ମୟୂରାକ୍ଷୀ ଜଳ ଭଉଁରୀରେ
ହଜିଗଲା ସମୟର
ସବୁ ଭଲଦିନ
ମୁଁ ପତ୍ରଟିଏ ହୋଇ
ଭାସିଗଲି ଦୂରରୁ ଅନେକ ଦୂର ।



# ବତିଶି

କବିତା ଆଉ କ'ଣ କି ?
ଯାହା ପ୍ରେମ ତହା ହିଁ କବିତା
ଭଲ ନ ପାଇଲେ
କବି ହେବା ଅସମ୍ଭବ
ହିସାବୀ ମଣିଷ
କେବେ ପ୍ରେମ କରିପାରେ ନାହିଁ
ପ୍ରେମ ଜୀବନକୁ
ମହିମାନ୍ୱିତ କରେ
ଦିଗ୍‌ବଳୟ ଧରିବାକୁ
ସାହସ ଆଣିଦିଏ
ପ୍ରେମ ଭାଙ୍ଗେନାହିଁ
ଯାହା ଭାଙ୍ଗିଯାଏ
ତାହା ପ୍ରେମ ନୁହେଁ
ଏଇଆ ଥିଲା
ରବୀନ୍ଦ୍ରନାଥଙ୍କ ଦର୍ଶନ ।

ପ୍ରେମ ଏକ ସେତୁ
ଯାହା ଯୋଡ଼ିଦିଏ
ପ୍ରାଣ ସହ ପ୍ରାଣ
ଦେଶ ସହ ଦେଶ
ଭାଷା ସହ ଭାଷା
ଶାନ୍ତିନିକେତନରେ
ଅନବରତ ବାଜୁଥାଏ
ଜୀବନକୁ କୋଳାଇ ନେବାର
ଏକ ଅପୂର୍ବ ମଧୁର ସ୍ୱର
ତମେ ଆସିଲେ ଦେଖିବ ।

ସପ୍ତପର୍ଣ୍ଣି ଗଛ ତଳେ ଘଡ଼ିଏ ବସିଲେ
ରବୀନ୍ଦ୍ର ସଂଗୀତର ଅନ୍ତରା
କାନରେ ବାଜିବ
ସାରା ରାତି ଚନ୍ଦ୍ର କିରଣରେ
ଜୁଡୁବୁଡୁ ବଉଳ, ଅଶୋକ
କାଠଚମ୍ପା
ଚାରିଆଡ଼େ ପ୍ରେମର ସୁଗନ୍ଧ
ଦୂର ଦିଗ୍‌ବଳୟରେ
ଏକ ଆଲୋକିତ ବତୀଘର
କି ମହାର୍ଘ ଅନୁଭବ
ଚିରନ୍ତନ ପ୍ରେମର



# ତେତିଶି

ଆଜି ବୋଧେ ଜହ୍ନର ଜନ୍ମଦିନ
ମୋ ସ୍ମୃତି ଓ ସ୍ୱପ୍ନର ମଧୁମୟ ବେଳ
ଶାନ୍ତିନିକେତନର ଏଇ ବର୍ଷା ଧୁଆ ଖରାବେଳ।
ମୋ ସହିତ ସଙ୍ଗାତ ହୋଇ ଆସିଛି ବର୍ଷା
ଦେଖିବାକୁ ଶାନ୍ତିନିକେତନ।
କେତେ ଆଲୋକବର୍ଷ, କେତେ ମନ୍ୱନ୍ତର ଡେଇଁ
ମୁଁ ଆସିଛି ଦେଖିବାକୁ
ମୋ ପ୍ରିୟ ଶାନ୍ତିନିକେତନ।
ଆଗପରି ଭୀରୁ ଯୁଥିକାରେ, 'ଫାଗୁନ୍‌ବଧୂର'
ସଲ୍ଲଜ ଓଠରେ
ଅନୁରାଗ, ଅନୁରାଗ, ମଧୁଝରା ସ୍ୱର
ଆଜି ଏଇ ଫୁଲଫୁଟା ବେଳ
ମୁଗ୍ଧ ଖରାବେଳ,
ବର୍ଷାରେ ଓଦା ହୋଇଯାଏ
ମୋ ପ୍ରିୟ ଶାନ୍ତିନିକେତନ।
ଶାନ୍ତିନିକେତନ ବିଷୟରେ କବିତା ଲେଖିଲା ବେଳେ
ମୁଁ ଭୀଷଣ ଅସହାୟ ହୋଇଯାଏ।
ଯେମିତିକି ଶାନ୍ତିନିକେତନ ଏକ ନାଁ ନୁହେଁ
ଚେତନାର ଭୂମି।

ଯେଉଁଠି ମୁଁ କିଛିବେଳ
ଭୁଲିଯାଇଥିଲି ପୃଥିବୀର ସମସ୍ତଙ୍କୁ।
ଏଇ ଭୂମିରେ ମୁଁ ପୋତି ଦେଇଥିଲି
ପ୍ରେମର ମଞ୍ଜିକୁ।
ଆଜି ଆସି ଦେଖୁଛି
ସେ ଗଛଟି ମହୀରୁହ
ପାଲଟି ଯାଇଛି ଏହା ଭିତରେ।
ଶାଳପ୍ରାଂଶୁ ଡେଣାରେ ତା'ର
କେତେ ବିସ୍ମୟ
ବସା ବାନ୍ଧିଛି।
ଶାନ୍ତିନିକେତନ ଏକ ବିସ୍ମୟ
ଏକ ସ୍ୱପ୍ନମୟ ଭୂଖଣ୍ଡ।



## ଚଉତିରିଶି

ଶାନ୍ତିନିକେତନ ମୋ ପାଇଁ ଥିଲା ଏକ ଆବିଷ୍କାର
ମୁଁ ସେଠାରେ ଆବିଷ୍କାର କଲି
ପ୍ରଥମେ ମୋ ନିଜର ଅସ୍ମିତାକୁ
ଆତ୍ମଦର୍ଶନ କଲି ରବୀନ୍ଦ୍ର କବିତାକୁ ।
ଶାନ୍ତିନିକେତନ ମୋ ସାମ୍ନାରେ
ପରସ୍ତ ପରସ୍ତ ହୋଇ ଖୋଲିଗଲା ସାରସ୍ୱତ ମନ୍ତ୍ରପରି
ସରସ୍ୱତୀଙ୍କର ପୀଠ ଥିଲା ଶାନ୍ତିନିକେତନ
ସକାଳ ମାଙ୍ଗଳିକରେ
ମନ୍ଦିରର ମନ୍ତ୍ରଧ୍ୱନି
ମୁଁ ମଗ୍ନ ହେଲି ଯେତିକି ମୁଗ୍ଧ ହେଲି ସେତିକି
ଅଭିନନ୍ଦିତ ହେଲା ମୋର ଅସ୍ମିତା ।

ଶାନ୍ତିନିକେତନରେ ପ୍ରଥମେ ଆବିଷ୍କାର କଲି
ଏକ ଉତ୍ତରିତ ପ୍ରେମକୁ।
ଉଦ୍ଧାର କଲି ଭାଙ୍ଗି ପଡୁଥିବା ମୂଲ୍ୟବୋଧକୁ
ଆତ୍ମଘାତିନୀ କାଦମ୍ବରୀ ଦେବୀଙ୍କ ସ୍ୱପ୍ନର ଇମାରତକୁ
ରହସ୍ୟମୟ କୁହେଳିକାର ସତ୍ତାକୁ
ଆନାଭିକ୍ଟୋରିଆ କିମ୍ବା ଇନ୍ଦିରାଙ୍କର ରହସ୍ୟମୟତାକୁ
ମୋ ପାଇଁ ଏହା ଥିଲା ଏକ ଆବିଷ୍କାର।



# ପଇଁତିରିଶି

ସଇତାନମାନଙ୍କ ଶିବିର ଭିତରେ
ଶାନ୍ତିନିକେତନ ଆଜି ପଣବନ୍ଦୀ।
ଦଲାଲ୍‌ମାନେ ତ
ନିଲାମ କରିଦେଲେଣି ଏଠାକାର
ଆଭିଜାତ୍ୟ ଆଉ ସମ୍ମାନ।
ଲୁହ ଜୁଡୁବୁଡୁ ଶାନ୍ତିନିକେତନକୁ
କିଏ ରକ୍ଷା କରିପାରିବ
ପିଶାଚମାନଙ୍କ ହାତମୁଠାରୁ।
ଏଇ ପ୍ରଚଣ୍ଡ କୋଳାହଳ ଭିତରେ
ସମସ୍ତେ ନିଜ ନିଜର
ଆତ୍ମରକ୍ଷାରେ ବ୍ୟାକୁଳ।
ଢେର ଦିନ ପରେ ଯାଇଥିଲି ଶାନ୍ତିନିକେତନ
ଦେଖିଲି ଆମ୍ରକୁଞ୍ଜର
ଗହଳିଆ ପତ୍ର ସନ୍ଧିରେ
ହଳଦୀବସନ୍ତଟିଏ ବସିଛି
ମୁହଁ ଶୁଖାଇ।
ଗୀତ ଗାଇବା ସେ ଢେର ଦିନରୁ
ଭୁଲିଯାଇଛି ଯେମିତି।

ମୋତେ ଦେଖି ସେ ଉଡ଼ିଗଲା ନାହିଁ
ସଇତାନ୍‌ମାନେ ତା' ଡେଣା
କାଟି ଦେଇଥିଲେ ।
ମୁଁ ସ୍ତବ୍ଧ ହୋଇ ଅନାଇ ରହିଲି
ସମସ୍ତଙ୍କ ସାମ୍ନାରେ
ମୋ ପରି ଅନେକ କବିଙ୍କର
ପକ୍ଷ ଛେଦନ କରି
ଆତ୍ମତୃପ୍ତିରେ ବିଭୋର ହେଲେ
ସଇତାନ୍‌ମାନେ ।
ସ୍ୱର୍ଣ୍ଣକାତର ଗଛମାନଙ୍କ ଆଖିରୁ
ଲୁହ ବୋହିଯାଇଥିଲା ସେଦିନ ।
କଦମ୍ବ ଗଛର ପତ୍ର ହଲୁ ନଥିଲା
ବଉଳ ଗଛରେ ଫୁଲ ଫୁଟୁ ନଥିଲା
ସଇତାନମାନେ କଣ ବୁଝିପାରିବେ
ପ୍ରତିବାଦର ଭାଷା ସେମାନଙ୍କର ।
ଆଜିକାଲି ଦିନ ଦ୍ୱିପ୍ରହରେ
କୁଆ ଶାଗୁଣା ଏବଂ ବିଲୁଆମାନେ
ଘୂରି ବୁଲୁଛନ୍ତି ସଇତାନମାନଙ୍କ
ଘର ଚାରିପାଖରେ ।
ପରିହାସ ଏବଂ ଶ୍ଳେଷରେ
ଫାଟି ପଡୁଛି ଖଣ୍ଡମଣ୍ଡଳ
ଅତି ନିକଟରୁ ଶୁଭୁଛି
ମୃତ୍ୟୁର ବିକଟ ଚିତ୍କାର ।



# ଛତିଶି

ନୀଳକଣ୍ଠ ପକ୍ଷୀମାନେ
ଉଡାନ ହୋଇ ଗଲେଣି ଶାନ୍ତିନିକେତନରୁ
ଇଟା ଆଉ କଙ୍କ୍ରିଟ୍‌ର ଜଙ୍ଗଲ ଭିତରେ
ଲୌହ ପିଶାଚର
ଛାତି ଥରା ଶବ୍ଦ
ଏଇଠି ସେଦିନ
ଫାଗୁନ୍‌ବଧୂ ଗଛ ତଳେ
ଆକାଶର ରକ୍ତିମ ଆଭାକୁ
ତୂଳି ଆଉ କାନଭାସରେ
ଧରି ରଖିଥିବା
ଶିଳ୍ପୀ ଲଲାଟେନ୍ଦୁ
କଙ୍କ୍ରିଟ୍ ସିମେଣ୍ଟର ସଂସାରକୁ
ଆଦୌ ବୁଝି ନ ଥିଲା ।

ଲଲାଟେନ୍ଦୁ ପାଇଁ ଶାନ୍ତିନିକେତନ ଥିଲା
ଇଟୋପିଆ
ଲାଜକୁଳା ଲଲାଟେନ୍ଦୁ
ନୀଳକଣ୍ଠ ପକ୍ଷୀ
ଦେଖିଛି ବୋଲି ଦିନେ କହୁଥିଲା
ଲଲାଟେନ୍ଦୁର ଗାଁ ଚିଲିକା କୂଳର
ନୀଳକଣ୍ଠ ପକ୍ଷୀକୁ ସେ ଦେଖୁଛି ଅତି ନିକଟରୁ
କଂକ୍ରିଟ୍ ଜୀବନ ଭିତରେ
ଶାନ୍ତିନିକେତନ ମଧ୍ୟ କଂକ୍ରିଟ୍
ପାଲଟି ଗଲାଣି ବହୁକାଳରୁ ।

ସେଦିନ ଭୁବନେଶ୍ୱରର ରବୀନ୍ଦ୍ରମଣ୍ଡପରେ
ଲଲାଟେନ୍ଦୁ ସହ ଦେଖାହେଲା ।
ମେଘ ବତୁରା ଆକାଶ ପରି
ଦିଶୁଥିଲା ତା ଚେହେରା ।
ଲଲାଟେନ୍ଦୁ ଭଡ଼ା ଘର ଖୋଜୁଥିଲା
ମୁଣ୍ଡ ଗୁଞ୍ଜିବା ପାଇଁ
ଅତି ଛୋଟ ନିରିମାଖି ଘର ।
ସଂସାର କରି ମଧ୍ୟ ସଂସାରୀ
ହୋଇ ପାରିଲାନି ଲଲାଟେନ୍ଦୁ ।

ଲଲାଟେନ୍ଦୁ ପାଇଁ ଶାନ୍ତିନିକେତନ ଥିଲା
ଇଟୋପିଆ
ଲାଜକୁଳା ଲଲାଟେନ୍ଦୁ
ନୀଳକଣ୍ଠ ପକ୍ଷୀ
ଦେଖିଛି ବୋଲି ଦିନେ କହୁଥିଲା
ଲଲାଟେନ୍ଦୁର ଗାଁ ଚିଲିକା କୂଳର
ନୀଳକଣ୍ଠ ପକ୍ଷୀକୁ ସେ ଦେଖୁଛି ଅତି ନିକଟରୁ
କଂକ୍ରିଟ୍ ଜୀବନ ଭିତରେ
ଶାନ୍ତିନିକେତନ ମଧ୍ୟ କଂକ୍ରିଟ୍
ପାଲଟି ଗଲାଣି ବହୁକାଳରୁ ।

ସେଦିନ ଭୁବନେଶ୍ୱରର ରବୀନ୍ଦ୍ରମଣ୍ଡପରେ
ଲଲାଟେନ୍ଦୁ ସହ ଦେଖାହେଲା ।
ମେଘ ବତୁରା ଆକାଶ ପରି
ଦିଶୁଥିଲା ତା ଚେହେରା ।
ଲଲାଟେନ୍ଦୁ ଭଡ଼ା ଘର ଖୋଜୁଥିଲା
ମୁଣ୍ଡ ଗୁଞ୍ଜିବା ପାଇଁ
ଅତି ଛୋଟ ନିରିମାଖି ଘର ।
ସଂସାର କରି ମଧ୍ୟ ସଂସାରୀ
ହୋଇ ପାରିଲାନି ଲଲାଟେନ୍ଦୁ ।

ଶାନ୍ତି ନିକେତନର
ଚିତ୍ରଶିଳ୍ପୀ ଲଲାଟେନ୍ଦୁ
ବିନୟୀ ଲଲାଟେନ୍ଦୁ
ସଙ୍କୁଚିତ ହୋଇ କହିଲା
ଛୋଟ ଏକ ଘରର
ସନ୍ଧାନ ଦେଇ ପାରିବ
ଅଳ୍ପଦିନ ଭିତରେ ।
ନୀଳକଣ୍ଠ ପକ୍ଷୀ ନାହିଁ
ସ୍ୱପ୍ନ ନାହିଁ
ସ୍ମୃତି ମଧ୍ୟ ନାହିଁ ।
ଶିଳ୍ପୀ ଲଲାଟେନ୍ଦୁ
ସ୍ୱପ୍ନ ଦେଖୁଛି
ଶାନ୍ତିନିକେତନର
ପୂର୍ବପଲ୍ଲୀର ।



## ସଇଁତିରିଶି

ବଡ଼ ଭଉଣୀମାନେ ଯେମିତି ହେବା କଥା
ସେମିତି ଥିଲେ ସ୍ୱର୍ଣ୍ଣ କୁମାରୀ,
ରବୀନ୍ଦ୍ର ନାଥଙ୍କ ବଡ଼ ଭଉଣୀ
ଲେଖୁଥିଲେ କବିତା
ଯୋଡ଼ା ଶଙ୍ଖ ଘରେ
ପିଲାଦିନେ
କବି ପଣରେ ଦୀପ୍ତିମନ୍ତ ରବୀନ୍ଦ୍ରନାଥ
ସକାଳ ସୂର୍ଯ୍ୟର ଦୀପ୍ତି
ବ୍ୟକ୍ତିତ୍ୱରେ
ସ୍ମଶ୍ରୁମଣ୍ଡିତ ଚେହେରାରେ ।

ଆଜାନୁଲମ୍ବିତ ପୋଷାକରେ
ସ୍ୱର୍ଣ୍ଣ କୁମାରୀଙ୍କ ସ୍ନେହଶୀଳ ଆଖିରେ
ସାନଭାଇ ପାଇଁ
ଫିଟି ଯାଉଥିଲା ଅସରନ୍ତି ଆଶୀର୍ବାଦର ଝର
ସବୁ ସାନ ଭାଇ ମହର୍ଷି ନନ୍ଦନ
ହୋଇ ପାରନ୍ତି ନାହିଁ ।

ସାନଭାଇମାନେ ସେମିତି
ସାନଭାଇ ହୋଇ ରହନ୍ତି ଚିରକାଳ
ସ୍ନେହ ଆଉ ଭଲ ପାଇବାର
ସ୍ୱର୍ଣ୍ଣକୁମାରୀଙ୍କ ସ୍ନେହ ଆଉ ମମତାର
ଶେଷ ହୁଏ ନାହିଁ।
ଯୋଡ଼ା ଶଙ୍ଖ ହେଉ କି
ଶାନ୍ତିନିକେତନ ହେଉ
ସବୁଠାରେ କବିର କୋମଳ ସ୍ୱପ୍ନ
ବସା ବାନ୍ଧିଥାଏ।

କେତେ ଶୁଭଦିନ ଆସି ଚାଲିଯାଏ କବି ଜୀବନରେ
କେତେ ମାଙ୍ଗଳିକ ନହବତ
ବାଜୁଥାଏ ଶାନ୍ତିନିକେତନରେ
ରାତିରେ ଆସିବ ବୋଲି ପ୍ରତିଶ୍ରୁତି ଦେଇ
ଜହ୍ନଥାଏ ତା ନିଜ ଘରେ।

ସ୍ୱର୍ଣ୍ଣକୁମାରୀଙ୍କ ମନ
ଖୁସି ଆଉ ଆନନ୍ଦରେ
ଘର ଧରେ ନାହିଁ
ସାନଭାଇ ରବି
ଆଜି ବିଶ୍ୱକବି।



# ଅଠତିରିଶି

ଶାନ୍ତିନିକେତନ ବିଷୟରେ କବିତା ଲେଖିଲାବେଳେ
ମୁଁ ଭୀଷଣ ଅସହାୟ ହୋଇଯାଏ
ଯେମିତିକି ଶାନ୍ତିନିକେତନ ଏକ ନାଁ ନୁହେଁ
ଚେତନାର ଭୂମି ।
ଯେଉଁଠି ମୁଁ କିଛିବେଳ
ଭୁଲିଯାଇଥିଲି ପୃଥିବୀର ସମସ୍ତଙ୍କୁ ।
ଏଇ ଭୂମିରେ ମୁଁ ପୋତି ଦେଇଥିଲି
ପ୍ରେମର ମଞ୍ଜିକୁ ।
ଆଜି ଆସି ଦେଖୁଛି
ସେ ଗଛଟି ମହୀରୁହ
ପାଲଟି ଯାଇଛି ଏହା ଭିତରେ
ଶାଳପ୍ରାଂଶୁ ଡେଣାରେ ତା'ର
କେତେ ବିସ୍ମୟ
ବସା ବାନ୍ଧିଛି
ଶାନ୍ତିନିକେତନ ଏକ ବିସ୍ମୟ
ଏକ ସ୍ୱପ୍ନମୟ ଭୂଖଣ୍ଡ ।



# ଅଣଚାଳିଶି

ଏବେ ଭୋର ହୋଇ ଆସିଲାଣି
ପକ୍ଷୀଙ୍କର ନାନାବିଧ ସ୍ୱର,
ସାରାରାତି କ୍ଳାନ୍ତ ଶାନ୍ତିନିକେତନ।
କେତେ ବିଚାର ବିମର୍ଶ
କେତେ ଆଲୋଚନା,
ଚାରିଆଡ଼େ ପୋଲିସ ଛାଉଣୀ।
ଗତକାଲି ବୋଲ୍‌ପୁର ଷ୍ଟେସନରୁ
ହାତଧରି ନେଇ ଆସିଥିଲା
ତା ପାଖକୁ ଶାନ୍ତିନିକେତନ।
ମୁଁ ଜାଣେ ଏବେ ତା ମନ ଭଲ ନାହିଁ।
ଏବେ କିଛିଦିନ ହେବ
ତାକୁ କିଛି ଭଲ ଲାଗୁନାହିଁ।
ଭୋର ହୋଇ ଆସିଲାଣି,
ଟ୍ରେନ ଆସି ପହଞ୍ଚିବ ଆଉ ଟିକେ ପରେ
ବୋଲପୁର ଷ୍ଟେସନରେ।

ବହୁ ଦୀର୍ଘ ଦିନ ପରେ
ଆସିଥିଲି ତୋ ପାଖକୁ ଶାନ୍ତିନିକେତନ।
ବର୍ଷାର ନୂପୁର ପିନ୍ଧି
ନାଚୁଥିଲୁ ପହଞ୍ଚିଲାବେଳେ।
ଏତେ ବାସ୍ନା ଏ ମାଟିରେ
ଏତେ ଅନ୍ତରଙ୍ଗପଣ
ତୋ ସୁଗନ୍ଧିତ ସଂପର୍କରେ।
ପକ୍ଷୀମାନେ ଡାକିଲେଣି
ଯିବା ପାଇଁ,
ଜାଣେନି ଆଉ କେବେ
ତୋ ସହିତ ଦେଖାହେବ।
ସେତେବେଳେ
ଖୋଲିଦେବି ଅନେକ ଅକୁହା କଥା
ତୋ ପାଖରେ,
ଆଜି ବେଳ ନାହିଁ
ତୋର ବି ମନ ଭଲ ନାହିଁ।



## ଚାଳିଶି

ସମସ୍ତେ ଆସିପାରନ୍ତି ନାହିଁ ଶାନ୍ତିନିକେତନ
ମୁଁ ଆସିଥିଲି ଅଖଣ୍ଡ ଆତ୍ମବିଶ୍ୱାସ ସାଙ୍ଗରେ ଆଣି
ସ୍ୱପ୍ନ ସବୁକୁ ଗୁନ୍ଥୁଥିଲି ଅଛିଣ୍ଡା ସୂତାରେ
ଦମୟନ୍ତୀ ପରି ସଦିଛାମୟୀ
ବାନ୍ଧବୀମାନଙ୍କୁ
ସନ୍ଧୋଳୁଥିଲି ପରମ ଆଗ୍ରହରେ।
ମୁଁ ଦୀକ୍ଷା ନେଇଥିଲି
ରବୀନ୍ଦ୍ର ସଙ୍ଗୀତର।
ସମସ୍ତେ ଆସି ପାରନ୍ତି ନାହିଁ ଶାନ୍ତିନିକେତନ
ଆସିଲେ ବି ବୁଝିପାରନ୍ତି ନାହିଁ ଶାନ୍ତିନିକେତନ ଆତ୍ମାକୁ।

ଶାନ୍ତିନିକେତନ କାହିଁକି ସାକ୍ଷୀ ହେବ
ନୋବେଲ୍ ପୁରସ୍କାର ଚୋରି ଘଟଣାର
ଦୁର୍ନୀତିଗ୍ରସ୍ତ କେଉଁ କୁଳପତି;
ଅବା ଅଧ୍ୟାପକ ମାତୃଭାଷାକୁ
ସମୁଦ୍ରରେ ଫିଙ୍ଗି ଦେଲେ
ଅବା ହତ୍ୟା କଲେ
ଶାନ୍ତିନିକେତନ କିଆଁ ଦାୟୀ ହେବ
ଏସବୁର।

କେଉଁ ଜନ୍ମରେ କି ପୁଣ୍ୟ କରିଥିଲ
ସେଥିପାଇଁ ଶାନ୍ତିନିକେତନ ମାଟିକୁ ଛୁଇଁ ପାରିଲ।
ସମସ୍ତ ଅପନିନ୍ଦା ସତ୍ତ୍ୱେ
ଜୀବନକୁ ଧନ୍ୟକଲ।
ମୁଁ ଏଠାକୁ ଆସିଥିଲି ମୋ ନିଜ ପାଇଁ
ବୁଣାବୁଣି ହୋଇ ପଡ଼ିଥିବା
ସ୍ୱପ୍ନ ସବୁକୁ ଏକାଠି ଗୁନ୍ଥିବା ପାଇଁ।
ନିଛାଟିଆ ନିର୍ଜନ ରାତିରେ
ରବୀନ୍ଦ୍ର ସଙ୍ଗୀତ ପଦେ
ଗୁଣୁ ଗୁଣୁ ହେବା ପାଇଁ।
ସମସ୍ତେ ଆସିପାରନ୍ତି ନାହିଁ ଶାନ୍ତିନିକେତନ
ଆସିଲେ ବି ଛୁଇଁ ପାରନ୍ତିନି
ଶାନ୍ତିନିକେତନ ଆତ୍ମାକୁ



## ଏକଚାଳିଶି

ଶାନ୍ତିନିକେତନ ଆମ୍ଭକୁ ତମେ
କେମିତି ବୁଝିବ ହୋ
ତମେ ସେ ମାଟିକୁ କେବେ ଭଲପାଇନ
ନିଜର କୁଉଦ୍ଦେଶ୍ୟ
ସାକାର କରିବା ପାଇଁ
ଏଠାକୁ ଯାଇଥିଲ
ନା ଶାନ୍ତିନିକେତନର ହେଲ
ନା ଆଉ କେଉଁ ଶୁଦ୍ଧପୂତ
ମଣିଷର ।

ତୁମେ କାହାରି ନୁହଁ
ଅନ୍ଧାର ଭିତରେ
ତମ ନିଜର ରୂପ ଦେଖି
କେତେଥର ନ ଡରିଚ କହିଲ ।
କେତେ ବୀଭତ୍ସ, କେତେ ଜଘନ୍ୟ
ତମ ଭିତରର ଚେହେରା
ତମର ମନେଥିବ
କେତେ ସରଳ ମଣିଷର ବିଶ୍ୱାସର
ଗଳା ଚିପି
ଉତ୍କଟ ହସରେ ଫଟାଇ ଦେଇଛ
ଭୂମମଣ୍ଡଳ ।
କିଏ କହିପାରିବ
ତମେ ଶାଗୁଣା, ବିଲୁଆ
ଏବଂ ସରୀସୃପମାନଙ୍କର
ଆହାର ନ ହେବ ବୋଲି ।

ଇତିହାସ ତମକୁ କେବେ କ୍ଷମାଦେବନି
ଶାନ୍ତିନିକେତନର ଶୁଦ୍ଧସୁବର୍ଣ୍ଣ
ବାତାବରଣରେ
କେତୋଟି ବିଷମଞ୍ଜି ତମେ ବୁଣିଦେଇଛ
ସେହି ବିଷବୃକ୍ଷମାନେ
ତାଳପତ୍ର ମେଲି
ଆଜି ଆସ୍ଫାଳନରେ
ମେଦିନୀ କମ୍ପାଉଛନ୍ତି।
ଶାନ୍ତିନିକେତନର ଯେଉଁ ସୁନ୍ଦର
ନିରୀହ ଶାଳ ଆମ୍ବ
ଏବଂ କଦମ୍ବ ଗଛ ସବୁ ଥିଲେ
ମୁଁ ଶୁଣିଲି ସେମାନେ
ଅସୁସ୍ଥ ହୋଇପଡ଼ିଛନ୍ତି
ବିଷବୃକ୍ଷମାନଙ୍କର
ଖର ନିଃଶ୍ୱାସରେ।
ବିଶ୍ୱାସର ବଡ଼ଦାଣ୍ଡରେ
ପ୍ରାର୍ଥନାରତ ମଣିଷ
ମାନଙ୍କ ଦୀର୍ଘଶ୍ୱାସର
ହାହାକାର
ଘୋଟି ଆସୁଛି ଶାନ୍ତିନିକେତନରେ।



## ବୟାଳିଶି

ଚୁପ୍‌ଚାପ୍ ଜହ୍ନରାତି ଶୋଇଥାଏ
ତୁମରି ପାଖରେ
ନୀରବରେ ଚିତ୍ର ଆଙ୍କି ଚାଲିଥାଅ
ଟେରାକୋଟା ଜୀବନ ଭିତରେ
ଶାନ୍ତିନିକେତନରେ
କଳାଭବନର ଚତ୍ୱରରେ
ପଥରର ପ୍ରତିମୂର୍ତ୍ତି ହୋଇ
ଆଜି ବି ସେମିତି ଖୋଜିଲାଗିଛ
ରାଗବିହାଗ ଓ ବିଦେଶିନୀ କବିତାର
ଶେଷ କେଇ ପଦ ।

ଆଜି ବି ଜହ୍ନରାତି ସେମିତି ଚୁପ୍‌ଚାପ୍
ବସିଛି ତମ ପାଖରେ
ଶିଳ୍ପୀ ରାମକିଙ୍କର
କି ଚିତ୍ର ଆଙ୍କୁଚ ଶିଳ୍ପୀ ସାରାଟା ଜୀବନ
ତମେ ଯୁଆଡ଼େ ଯୁଆଡ଼େ ଯାଉଥାଅ
ଜହ୍ନ ତମ ପଛେ ପଛେ ଚାଲୁଥାଏ
ରାତି ସରିଯାଏ ଚିତ୍ର ଅଙ୍କା ସରେ ନାହିଁ
ଚିତ୍ରଅଙ୍କା ଚାଲିଥାଏ
ତୂଳୀ ଆଉ ରଙ୍ଗରେ କବିତା ଆଙ୍କୁଥାଅ କାନ୍‌ଭାସ୍‌ରେ
ରବୀନ୍ଦ୍ର ସଙ୍ଗୀତର ଅନ୍ତରା
ବାଜି ଚାଲିଥାଏ ତମ ମନ ଗମ୍ଭୀରା ଭିତରେ।

ଶାନ୍ତିନିକେତନ ଥିଲା ତମ ପାଇଁ ଇଟୋପିଆ
ତମକୁ ମୁଁ ବହୁବାର ଭେଟୁଥିଲି
ଆମ୍ରକୁଞ୍ଜର ଶାଲ୍ ବିଥିରେ
ତମକୁ ସେଦିନ ମୁଁ ଚିହ୍ନିପାରି ନଥିଲି
ଶିଳ୍ପୀ ରାମକିଙ୍କର।
ତମ ଭିତରେ ଜଳାଇ ରଖିଥିବା
ସକୁମାର ଶିଖାଟିକୁ
ମୁଁ ସେଦିନ ବୁଝିପାରିଲିନି।

ଏବେ ତମେ ଶାନ୍ତିନିକେତନରେ ଆଉ ନାହିଁ
ବାହୁଡ଼ି ଗଲଣି ବହୁଦିନୁ ସଂସାରରୁ
ତମ ପ୍ରିୟ ଶାନ୍ତିନିକେତନ,
ଆମ୍ରକୁଞ୍ଜ, ଶାଲବିଥି କଳା ଭବନ
ସବୁ ସେମିତି ରହିଛି ।
ଗୀଟାରରେ ବାଜୁଥିବା 'ଆମି ଚିନିଗୋ
ଚିନି ତୋମାରେ' ରବୀନ୍ଦ୍ର ସଂଗୀତ
ଆଉ ବାଜୁ ନାହିଁ ।
ଆଜିକାଲି ଜହ୍ନ ରାତି ଆହୁରି ନିଷ୍ପ୍ରଭ
ହୋଇଯାଇଛି ।
ବେହେଲାର କାନ୍ଦୁରା ସ୍ୱର
ବହୁ ଦୂରରୁ ଭାସି ଆସୁଛି ।



# ଡେୟାଲିଶି

ସେଦିନ ମୋ ମାତୃଭାଷାକୁ
ସେମାନେ ପ୍ରଶ୍ନ କରୁଥିଲେ
ଆଶ୍ଚର୍ଯ୍ୟରେ
ଶାନ୍ତିନିକେତନରେ
ଏତେ ପ୍ରାଚୀନ ଏ ଭାଷା
ସ୍ଥାପତ୍ୟ ପରି ସୁନ୍ଦର
ଏ ଭାଷାର ଶାସ୍ତ୍ରୀୟତା
ଏତେ ପୁରାତନ
ପୁଣି ନିତ୍ୟ ନୂତନ।

କେତେ ଗରିମାମୟ ଏ ଭାଷା
ଆର୍ଯ୍ୟ ଋଷିର ଶ୍ଳୋକ ପରି
ଗୁରୁଗମ୍ଭୀର ଆଉ ଉଦାର।

ସେଥିପାଇଁ ବୋଧହୁଏ ସେଦିନ
ରବୀନ୍ଦ୍ରନାଥ
ଭାଷା ଭାବନାରେ ବିଭୋର ହୋଇ
ପ୍ରଣାମ କରୁଥିଲେ ମନେମନେ
ବୈତାଳିକର ପ୍ରାର୍ଥନା ଭିତରେ।

ମୁଁ ସ୍ୱପ୍ନଦେଖିଲି ମୋ ପ୍ରିୟ ଭାଷାରେ
ସୁଦୂର ଶାନ୍ତିନିକେତନରେ।
ମୋ ଭାଷାକୁ ମାନ୍ୟତା ଦେଲା ଶାନ୍ତିନିକେତନ
ଗଛ ସହ ଫୁଲ ସହ
'ଖୋଆଇ' 'କୁପାଇ' ସହ
କଥାବାର୍ତ୍ତା ହେଲି
ମୋ ଭାଷାରେ।

ବାଉଲମାନଙ୍କ
ଗୀତ ସହ
ଓଡ଼ିଆ ଗୀତ ମିଶି ଏକାକାର
ହୋଇଗଲା ସେଦିନ
ମୁଁ ବିହ୍ୱଳ ହେଲି ବାଉଲ୍ ପରି।
ରବୀନ୍ଦ୍ରସଙ୍ଗୀତରୁ
ଶାସ୍ତ୍ରୀୟ ସଙ୍ଗୀତର
ସନ୍ଧାନ ପାଇଲି
କାରୁକାର୍ଯ୍ୟମୟ ଓଡ଼ିଆ ଭାଷା
ସ୍ଥାପତ୍ୟ ପାଲଟିଗଲା
କଳାଭବନ କାନ୍ଥରେ
ଶାନ୍ତିନିକେତନରେ।

ମୁଁ ସ୍ୱପ୍ନଦେଖିଲି ମୋ ପ୍ରିୟ ଭାଷାରେ
ସୁଦୂର ଶାନ୍ତିନିକେତନରେ ।
ମୋ ଭାଷାକୁ ମାନ୍ୟତା ଦେଲା ଶାନ୍ତିନିକେତନ
ଗଛ ସହ ଫୁଲ ସହ
'ଖୋଆଇ' 'କୁପାଇ' ସହ
କଥାବାର୍ତ୍ତା ହେଲି
ମୋ ଭାଷାରେ ।

ବାଉଲମାନଙ୍କ
ଗୀତ ସହ
ଓଡ଼ିଆ ଗୀତ ମିଶି ଏକାକାର
ହୋଇଗଲା ସେଦିନ
ମୁଁ ବିହ୍ୱଳ ହେଲି ବାଉଲ୍ ପରି ।
ରବୀନ୍ଦ୍ରସଙ୍ଗୀତରୁ
ଶାସ୍ତ୍ରୀୟ ସଙ୍ଗୀତର
ସନ୍ଧାନ ପାଇଲି
କାରୁକାର୍ଯ୍ୟମୟ ଓଡ଼ିଆ ଭାଷା
ସ୍ଥାପତ୍ୟ ପାଲଟିଗଲା
କଳାଭବନ କାନ୍ଥରେ
ଶାନ୍ତିନିକେତନରେ ।



ଓଡ଼ିଆ ବିଭାଗ ସାମ୍ମୁଖରେରେ  ଥିବା ଶିଳ୍ପୀ ରାମକିଙ୍କର ବେଜଙ୍କ ଦ୍ୱାରା ନିର୍ମିତ  ସ୍ଥାପତ୍ୟ ।



ଶାନ୍ତିନିକେତନର ବିରଳା ମହିଳା ଛତ୍ରାବାସ ସମ୍ମୁଖରେ ରାମକିଙ୍କର ବେଜଙ୍କ ଦ୍ୱାରା ନିର୍ମିତ ଶିଳ୍ପକୃତି ପାଖରେ କବୀ ।

ପ୍ରଫେସର ମିଶ୍ର ଥିଲେ ସ୍ଥିତପ୍ରଜ୍ଞ
ସ୍ୱାଭିମାନୀ, ବୀତଶୋକ ଦେବୋପମ
କବି ଗୁରୁ ରବୀନ୍ଦ୍ରନାଥ
ଆଦର୍ଶ ତାଙ୍କର।
ଗଛମାନେ ଅଧିକ ଆତ୍ମୀୟ ମଣିଷ ଅପେକ୍ଷା
ସଖ୍ୟତାରେ, ବନ୍ଧୁତାରେ
ଅନ୍ତରଙ୍ଗତାରେ
ଗଛମାନେ ଆତ୍ମୀୟସ୍ୱଜନ ପରି
ଲୁହ ନିଗାଡ଼ନ୍ତି
ଆସନ୍ନ ବିପଦ ଆସିଲେ।
ଦେବ ମୁହୂର୍ତ୍ତରେ ବୋଧହୁଏ ଜନ୍ମ
ନରେନ୍ଦ୍ର ମିଶ୍ରଙ୍କର
ତାଙ୍କ ପରି ନିର୍ମାୟା ମଣିଷମାନଙ୍କ ପାଇଁ
ଆଶିଷ ବର୍ଷୁଥିଲା ସ୍ୱର୍ଗରୁ ଶାନ୍ତିନିକେତନରେ।
ସେତେବେଳେ
ଶାନ୍ତିନିକେତନ ଥିଲା ସ୍ୱର୍ଗ ପରି ସୁନ୍ଦର
ବିଷମଞ୍ଜି ବୁଣିବା କଥା କେବେ କେହି
ସ୍ୱପ୍ନରେ ବି ଭାବୁ ନଥିଲେ।

ଚକ୍ରାନ୍ତକାରୀ ଭଷ୍ମାସୁରମାନେ ଦିନେ
ଶାନ୍ତିନିକେତନକୁ ଆସିଲେ
ଏବଂ ନିର୍ଦ୍ୱନ୍ଦରେ ନିଜର ମାତୃଭାଷାକୁ
ହତ୍ୟା କଲେ
ପକ୍ଷଚ୍ଛେଦ କଲେ ପ୍ରଫେସର
ମିଶ୍ରଙ୍କର।
ପ୍ରଫେସର ମିଶ୍ର ସେଦିନ ବାକ୍‌ରୁଦ୍ଧ
ହୋଇଯାଇଥିଲେ
ଦୁଃଖ ଏବଂ ଅନୁଶୋଚନାରେ।

ସେହି ଭଷ୍ମାସୁରମାନଙ୍କ ସହ
ଯଦି କେତେବେଳେ ଅକସ୍ମାତ
ଦେଖା ହୋଇଯାଏ ମୋର
ଘୃଣା ଏବଂ ଅପମାନ
ଭୂମିକମ୍ପରେ
ମୋ ଭିତରଟା ଚୂରମାର୍ ହୋଇଯାଏ।
ପ୍ରଫେସର ମିଶ୍ରଙ୍କ ପରି
ଦେବୋପମ ବ୍ୟକ୍ତିମାନେ ବାରମ୍ବାର
କ୍ଷମା କରିଦିଅନ୍ତି କେବଳ
ସଇତାନମାନଙ୍କର କୁତ୍ସିତ ଅଭିପ୍ରାୟ ।



# ଏକାବନ

ଆକାଶର କାନଭାସ୍ ଉପରେ
ସଞ୍ଜ ବୋଳି ଦେଲାଣି ଅନ୍ଧାରର ରଙ୍ଗ
ପଥର ମୂର୍ତ୍ତିରେ ରାମକିଙ୍କର
ଅନବଦ୍ୟ, ଅବିସ୍ମରଣୀୟ
ଶିଳ୍ପୀ ରାମକିଙ୍କର
ଶାନ୍ତିନିକେତନର ଖୋଲା ପଡ଼ିଆ ଉପରେ
ଶୋଇ ଶୋଇ ସେଦିନ ଗାଉଥିଲ
"ଆମ ଚିନି ଗୋ ଚିନି ତୋମାରେ ଓଗୋ ବିଦେଶିନୀ"
କୁଆଡ଼େ ଗଲା ତମ ଗୀଟାର, ତୂଳି ଆଉ ରଙ୍ଗ
କୁଆଡ଼େ ଗଲା ଜୀବନର ଶେଷ କେତେ
ବର୍ଷର ରାଗ ବିହାଗର ଆଳାପ
ତମ ପାଖରେ ଶୋଇଥାଏ ଜହ୍ନରାତି
ସେମିତି ଚୁପ୍‌ଚାପ୍
ତମେ ଚିତ୍ର ଆଙ୍କି ଚାଲିଥାଅ।
ଟେରାକୋଟା ଜୀବନ ଭିତରେ।



## ବାଉନ

ସେ ଚିତ୍ର ଆଙ୍କୁଚ ଶିଳ୍ପୀ ସାରାଟା ଜୀବନ
ଗୀତ ଗାଉଚ ତୁମେ ବାଉଲ୍ ସଂଗୀତ
ଅବା ରବୀନ୍ଦ୍ର ସଙ୍ଗୀତ।
ଚୁପ୍‌ଚାପ୍ ଜହ୍ନରାତି ଶୋଇ ପଡ଼ିଥାଏ
ଶାନ୍ତିନିକେତନରେ
ନୀରବରେ ଚିତ୍ରଆଙ୍କି ଚାଲିଥାଅ
ଟେରାକୋଟା ସମୟ ମଝିରେ।
ବେଳେବେଳେ ଅନ୍ଧାରରେ କାହା ସହ
ଗପସପ ହେଉଥାଅ
ମାଧବୀ କୁଞ୍ଜର ଅଧା ଛାଇ ଅଧା ଆଲୁଅରେ
ରବୀନ୍ଦ୍ରନାଥଙ୍କ ଉଦିଚୀ ପ୍ରତୀଚି*
ଭୂଖଣ୍ଡ ଭିତରେ
ଶ୍ୟାମଳୀର ଚତ୍ୱରରେ।

* ଉଦିଚୀ ଏବଂ ପ୍ରତୀଚି ରବୀନ୍ଦ୍ରନାଥଙ୍କ ଘରର ନାମ।

ବସି ବସି ଭାବୁଛ କି ଗାନ୍ଧି ଆସିଥିଲେ ଦିନେ
କବିଙ୍କର ନିମନ୍ତ୍ରଣ ରକ୍ଷା କରି ଆଶ୍ରମକୁ
ତାଙ୍କର ସ୍ମୃତିରେ ମାଟି ଘର
ନାମାଙ୍କିତ ହେଲା "ଶ୍ୟାମଳୀ'ରେ
ସ୍ୱର୍ଣ୍ଣାକ୍ଷରେ ନାମାଙ୍କିତ ହେଲା
"ଶ୍ୟାମଳୀ" ନାମରେ
ରାତି ସରିଯାଏ ଚିତ୍ର ଅଙ୍କା ସରେ ନାହିଁ
ଶିଳ୍ପୀ ରାମକିଙ୍କର।
ତୂଳି ଆଉ ରଙ୍ଗରେ କବିତା ଲେଖୁଥାଅ
କାନ୍‌ଭାସ୍ ଉପରେ
ରବୀନ୍ଦ୍ର ସଙ୍ଗୀତର ଅନ୍ତରା ବାଜିଚାଲିଥାଏ
ତମ ମନ ଗମ୍ଭୀରା ଭିତରେ।
ଶାନ୍ତିନିକେତନ ଥିଲା ତୁମ ପାଇଁ ଇଟୋପିଆ।
ଆମ୍ରକୁଞ୍ଜ, ଶାଲ୍ ବିଥି ତଳେ ଯେଉଁଠାରେ
ସବୁବେଳେ ଆନନ୍ଦ ହିଁ ଆନନ୍ଦ କେବଳ ଦେଇଗଲ
କି ପ୍ରଖର ଶିଖା ତୁମେ ଜଳାଇ ରଖିଲ
ତୁମ ଅନୁଗାମୀ ମାନଙ୍କ ମନରେ
ସମୟ ଖଣ୍ଡର
ଶେଷହୀନ
ମୁଁ କହିବାକୁ ଇଚ୍ଛା କରି
କହି ପାରି ନାହିଁ ବହୁ କଥା
ଆପଣଙ୍କୁ
କାଳେ ଆକାଶ ସ୍ତବ୍ଧ ହୋଇଯିବ
ମୋ କଥା ଶୁଣି।

କାଳେ ଆପଣ ଭାବିବେ
ମୁଁ ଯାହା କହୁଛି ମିଛ କଥା ବୋଲି।

ତଥାପି ସମ୍ମାନ ଫୁଲମାଳ ଦେଲା ବେଳେ
ତମ ନିକଟରେ ଆପେ ଆପେ ମଥା ନଇଁଯାଏ ମୋର
ତୁମେ ଜୀବନକୁ ବୁଝିଥିଲ କି ନ ଥିଲ
ମୁଁ ଜାଣେ ନାହିଁ।
ମୁଁ ଖାଲି ଏତିକି ଜାଣେ ଯେ
ତମ ଭିତରେ ନିର୍ମାୟା ସରଳ ମଣିଷଟିଏ
ଲୁଚିଥାଏ ଠିକ୍ ମୋ ସାନଭାଇ ପରି।



# ତେପନ

ମହାକାଳ ଭୀଷଣ ନିଷ୍ଠୁର
କାହା ଗର୍ବ କି ଅହଙ୍କାର
କିଛି ରହେ ନାହିଁ
ସବୁ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଏ ।

ହୁଏତ ଦିନେ ନା ଦିନେ
ଶାନ୍ତିନିକେତନର ଫସିଲ୍ ଭିତରୁ
ମୋ ପରି ବଞ୍ଚିତ କବି କେତେ ଜଣ
କହିବେ ସବୁ କଥା
ଯେତେଯେତେ ଅନ୍ୟାୟ ଓ କପଟପାଶାର
ଖେଳ ଘଟିଥିଲା ସେ ମାଟିରେ
ଦୁଃଖ ଏବଂ ଅନୁଶୋଚନାରେ
କାନ୍ଦି ପାରି ନ ଥିଲି ସେଦିନ।
ଖର୍ବକାୟ, ବିଚାର ଶୂନ୍ୟ, ଠଗ କେତେଜଣ
ସେଦିନ ବସିଲେ ସିଂହାସନରେ।
ସେମାନଙ୍କ ଅଟ୍ଟହାସ୍ୟରେ
ଫାଟି ପଡୁଥିଲା ଖଣ୍ଡମଣ୍ଡଳ
ଶାନ୍ତିନିକେତନ ବିସ୍ଫାରିତ ଆଖିରେ
ଅନାଇ ରହିଥିଲା କେବଳ।

ଅତୀତର କବର ଭିତରୁ
ବହୁ ଉପେକ୍ଷିତ ଆତ୍ମା
ମହାକାଳଙ୍କୁ ପ୍ରଶ୍ନ କରୁଥିଲେ।
ଏ ଅନ୍ୟାୟ। ଘୋର ଅନ୍ୟାୟ
ସେମାନେ ବୁଝି ନ ଥିଲେ।
ପ୍ରତି ମୁହୂର୍ତ୍ତରେ ଅନୁସରଣ କରୁଛି
ସେମାନଙ୍କୁ ମହାକାଳ।
ମିଥ୍ୟା ଆଟୋପର ଆଡ଼ମ୍ବର
କ୍ଷମତାର ବୃଥା ଆସ୍ଫାଳନ
ବେପାରୀମାନଙ୍କ ପରି
ଅର୍ଥ ସାଉଁଟାରେ
ଯେଉଁମାନଙ୍କର
କଟିଥିଲା ବେଳ।

ସେମାନେ ସମସ୍ତେ ଆଜି ମହାକାଳ
ପାଖରେ ଯୋଡ଼ହସ୍ତ
ଏଇ କିଛିଦିନ ହେବ ଏକ ଅଦ୍ଭୁତ ଫୁଲ
ଫୁଟିଛି ଶାନ୍ତିନିକେତନରେ।
ସମସ୍ତେ ସ୍ତବ୍ଧ ସେ ଫୁଲ ଦେଖି
ନିଆଁ ଝୁଲ ପରି ତା ରଙ୍ଗ
ଅବିଦ୍ୟା, ଅନୀତି ସବୁ ସେଥିରେ
ପୋଡ଼ି ପାଉଁଶ ହୋଇଯିବ
ସେ ଫୁଲର ନାଁ ମହାକାଳ
ସାବଧାନ ହୋଇଗଲେଣି
ସଇତାନ୍‌ମାନେ
ଜାଣିଗଲେଣି ସେମାନଙ୍କର
ଅନ୍ତିମ କାଳ ଆସନ୍ନ।

❧

# ଚଉବନ

ଶାନ୍ତିନିକେତନ ନୁହେଁ,
ଯୋଡ଼ାଶଙ୍ଖରେ
ସାରା ସକାଳ ଉଦ୍‌ଭାସିତ ଆଲୋକିତ
ଆନନ୍ଦ ଓ ବିସ୍ମୟ ମଝିରେ
ସାରା ସକାଳ କବିତାର କାରୁକାର୍ଯ୍ୟ ଭିତରେ
ଯୋଡ଼ା ଶଙ୍ଖ ଫେରାଇ ଦେଲା
ଶୈଶବର ସୁଗନ୍ଧ
ଚୂଆ ଚନ୍ଦନମିଶା କାଠଚମ୍ପା ବଉଳର ଗନ୍ଧ
ଏନ୍ତୁଡ଼ିଶାଳରୁ
ଅନ୍ତିମ ଯାତ୍ରା ରବୀନ୍ଦ୍ରନାଥଙ୍କର
ସବୁ ଖୋଦିତ ହୋଇଛି
ଯୋଡ଼ା ଶଙ୍ଖରେ।
ବିଶ୍ୱକବିଙ୍କ ଜନ୍ମଦିନ ଗାଥା
ଚିତ୍ରିତ ଏଇ ମାଟିରେ।
କେତେ ଚିତ୍ର କଥା
କେତେ ସଙ୍ଗୀତର ଗାଥା
କେତେ ତୂଳି ଆଉ ରଙ୍ଗର
କାରୁକାର୍ଯ୍ୟ
ଭୀଷଣ ସୁନ୍ଦର।

ଯୋଡ଼ାଶଙ୍କର ମନ୍ତ୍ରସିଦ୍ଧ ମାଟିରେ
କ'ଣ ଏମିତି ଥିଲା ଯେ
କିଏ ହେଲା ଚିତ୍ରକର
କିଏ କବି
ପୁଣି କିଏ ନାଟ୍ୟକାର।

ଅଗ୍ରଜା ସ୍ୱର୍ଣ୍ଣ କୁମାରୀ
ଗୋଟିଏ ଏନ୍ତୁଡ଼ିଶାଳ
ଗୋଟିଏ ଶୈଶବର ଦିନ
ବଡ଼ ଭଉଣୀ ସ୍ୱର୍ଣ୍ଣକୁମାରୀ
ରବୀନ୍ଦ୍ରନାଥଙ୍କୁ କବିତା ଲେଖା ଶିଖାଇଥିଲେ
ନା ରବୀନ୍ଦ୍ର ଆଜନ୍ମରୁ କବି ଥିଲେ
ପୁତ୍ରବଧୂ ପ୍ରତିମା
ସ୍ନେହ ପ୍ରେମର ମୂର୍ତ୍ତିମନ୍ତ ପ୍ରତିମା
ଯୋଡ଼ା ଶଙ୍କର ଶିଢ଼ି
ଯାହା କବିଙ୍କୁ ସେଦିନ
ରହସ୍ୟମୟତା ଭିତରକୁ
ନେଇ ଯାଉଥିଲା।
ମୁଁ ମୁଗ୍ଧ ହୋଇ ଦେଖୁଥିଲି
ପ୍ରଣାମ କରୁଥିଲି ଯୋଡ଼ା ଶଙ୍କର ମାଟିକୁ
ତୀର୍ଥ ଭୂମିକୁ।



## ପଞ୍ଚାବନ

ମୁଁ କହିଲି, ମୁଁ ଶାନ୍ତିନିକେତନରେ ପଢୁଥିଲି
ଅନେକ ବର୍ଷ ଆଗେ
ଶାନ୍ତିନିକେତନରେ ଏମିତି ମେଘ ଥିଲା, ବର୍ଷା ଥିଲା
ଏଠି ଯେମିତି ପାହାଡ଼ ଉପରେ ମେଘ ବସା ବାନ୍ଧିଛି
ଏଇ ଶିମଲାରେ। ଠିକ୍ ସେମିତି।
ଏଠି କଥା କୁହା ପାହାଡ଼,
ପାହାଡ଼ ଉପରେ ମେଘ।
ସାତ ହଜାର ଫୁଟ ଉପରେ।
ଝିରି ଝିରି ସ୍ୱପ୍ନ ପରି ମେଘ
ଝିରି ଝିରି ସ୍ମୃତି ପରି ମେଘ
ଭାରି ସୁନ୍ଦର।
ଗବେଷଣା ଘର
ଏଡ୍‌ଭାନସ୍ ସେଣ୍ଟର।
ଏଠିକାର ଲାଇବ୍ରେରୀ
କେତେକେତେ ବହିର ପାହାଡ଼
ଟାଗୋର, ନେହେରୁ, ଗାନ୍ଧି
ସମସ୍ତଙ୍କ ତୈଳଚିତ୍ର
ଅନବଦ୍ୟ ସୁନ୍ଦର।

ଗବେଷଣା ସରିନାହିଁ
ଢେର୍ ଢେରି
ମୁଁ କେମିତି ଯିବି ଏଠୁ ଶିମଲାରୁ
ସମର ହିଲ୍‌ରୁ। ରାଷ୍ଟ୍ରପତି ନିବାସରୁ।
କିଛି ଦିନ ମେଘ ସହ ରହିବାକୁ ହେବ ମୋତେ
କିଛି ଦିନ ପାହାଡ଼ୀ ଫୁଲଙ୍କ ମେଳରେ
ମନ ଖୋଲା ଗୀତ ଗାଇବାକୁ ହେବ ମୋତେ
ଭୁଲିଯାଇଥିବା କବିତାମାନଙ୍କୁ
ଏକାଠି କରି
ଆଉ ଥରେ
ପାଣ୍ଡୁଲିପି ଲେଖିବାକୁ ହେବ ମୋତେ।
କୁଲୁ ଆଉ ମନାଲିର
କୋହଲା ପବନ
ଉଡ଼େଇ ଆଣିଛି ମେଘ ତା' ଡେଣାରେ
ସିମଲାର ମେଘମାନଙ୍କୁ
ଚିତ୍ରରେ ସଜାଡ଼ି ଦେଲାଣି ପରୀ।
ପାହାଡ଼ମାନଙ୍କୁ ବି
ଡ୍ରଇଁ ଖାତାରେ ବସାଇ ସାରିଛି।
କାଲିଠାରୁ
ଝରଣା ଫୁଲ ଆଉ ପ୍ରଜାପତିମାନେ
ଘୁର୍ ଘୁର୍ ହେଉଛନ୍ତି ରହିବା ପାଇଁ ପରୀ ପାଖରେ
ଡ୍ରଇଁ ଖାତା ଭିତରେ
ମୋ କବିତା ଲେଖା ସରିନାହିଁ।
ପରୀର ଚିତ୍ରଅଙ୍କା ସରିନାହିଁ।
ତଥାପି ଆମକୁ ଫେରିବାକୁ ହେବ ଘରକୁ
ଆଜି ସିବାଲିକ୍ ଟୟ ଟ୍ରେନରେ।



## ଛପନ

ଏଇ ପାଖରେ କେଉଁଠି ପଦ୍ମ ପୋଖରୀ
ବିନ୍ଦୁ ବିନ୍ଦୁ ଝରି ପଡୁଛି କର୍ପୂର ବାସ୍ନା
ମହମହ ବାସୁଛି ଚାରିଆଡ଼େ
ଏତେ ସୁନ୍ଦର ଏଇ ଫୁଲଫୁଟା ସକାଳ
ଟିକିଏ ଦୂରରେ ବ୍ରହ୍ମପୁତ୍ର
ବ୍ରହ୍ମପୁତ୍ର ଚାରିଆଡ଼େ
ଆତଙ୍କର ଛାଇ ଉଲ୍‌ଫାମାନଙ୍କର।
ଅମାନୁଷିକ ଘଟଣା ସ୍ଥାଣୁ କରିଦେଇଛି
ଏଇ ହସକୁରୀ ଫୁଲମାନଙ୍କୁ।
କାଲି ବଡ଼ି ଭୋର୍ ମୁଁ ଏଠାରୁ ଚାଲିଯିବି
ଚାଳିଶି ବର୍ଷ ତଳର
ଚିତ୍ରଶିଳ୍ପୀ ରୂପା ବରୁଆ
ଶାନ୍ତିନିକେତନର ଛାତ୍ରୀ
ଆଜି ଭାରି ମନେପଡୁଛି।
କେଉଁଠି ଥିବ ଆସାମର ସୁନାନାକି ଝିଅ ରୂପା
ସିଏ କ'ଣ ଚିତ୍ରଶିଳ୍ପୀ ହୋଇଥିବ ?
କାହା ପତ୍ନୀ ଅବା ପ୍ରେମିକା।

ଆଉ ଯଦି କେବେ ଆସେ ଆସାମ
ନିଶ୍ଚୟ ଖୋଜିବି ରୂପାକୁ।
ଏତିକି କହିବି, ମୁଁ ଭୁଲିନି ଶାନ୍ତିନିକେତନର
ସେଇ ସୁବର୍ଣ୍ଣ ସମୟ
ଗୋୟେଙ୍କା ଛାତ୍ରୀନିବାସର
ହସକୁରୀ ଝିଅ ରୂପାର ହସ।
ଅନେକ ଥର ଭାବେ ଚିଠି ଲେଖିବି ରୂପାକୁ
ଯିଏ ମୋତେ ବହୁବାର କହୁଥିଲା
ଶାନ୍ତିନିକେତନର ଏକ
ନିର୍ମେଘ ଆକାଶକୁ ଚାହିଁ
"ତମ ଚିଠିରୁ ଖଣ୍ଡେ ଦିଅନ୍ତନି ମନୋରମା ଦି"।





କବି ମନୋରମା ବିଶ୍ୱାଳ ମହାପାତ୍ରଙ୍କର କାବ୍ୟଯାତ୍ରା ଦୀର୍ଘ ଚାରିଦଶନ୍ଧି ଧରି । ବିଶ୍ୱଭାରତୀ ଶାନ୍ତିନିକେତନର କାବ୍ୟମୟ ପରିବେଶରେ ପରିବର୍ଦ୍ଧିତ ତାଙ୍କ କବିସତ୍ତା ରବୀନ୍ଦ୍ରିୟ ଭାବନା ସହିତ ଏକାତ୍ମ ହୋଇଯାଇଛି। 'ଥରେ ଖାଲି ଡାକିଦେଲେ', 'ସ୍ୱାତୀ ଲଗ୍ନ', 'ଏକଲା ନଈର ଗୀତ', 'ଜହ୍ନ ରାତିର ମୁହଁ', 'ଶବ୍ଦର ପ୍ରତିମା', 'ଫାଲ୍‌ଗୁନି ତିଥିର ଝିଅ', 'ବିଶ୍ୱାସର ପଦ୍ମବନ', 'ସଜଳ ମେଘର ଛାଇ', 'ନିର୍ବାଚିତ କବିତା', 'ଭାବୁଛି ଚିଠି ଲେଖିବି ମାଆକୁ', 'ଏବେ ଖାଲି ଚିତ୍ର ଆଉ ଚିତ୍ର ପ୍ରଭୃତି କବିତା ଗ୍ରନ୍ଥରେ ତାଙ୍କର କାବ୍ୟାନ୍ୱେଷା ଅଧିକରୁ ଅଧିକ ସଂପ୍ରସାରିତ ହୋଇଛି । କବିତା ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ଏବଂ ରାଜ୍ୟ ବାହାରୁ ଏକାଧିକ ପୁରସ୍କାର ଏବଂ ସମ୍ମାନରେ ସମ୍ମାନୀତା ହୋଇଛନ୍ତି । ବାଲେଶ୍ୱର ଜିଲ୍ଲାର ସମୁଦ୍ରକୂଳବର୍ତ୍ତୀ ଜଗାଇ ତାଙ୍କର ଜନ୍ମସ୍ଥାନ । ସମ୍ପ୍ରତି ପ୍ରୀତମପୁରୀ, ୧୨୫, ଆଚାର୍ଯ୍ୟବିହାର, ଭୁବନେଶ୍ୱରଠାରେ ସେ ଅବସ୍ଥାନ କରୁଛନ୍ତି।

କିଏ ରୋପଣ କରିଥିଲା
ଛୋଟ ଛୋଟ ଚାରାଗଛ
ସପ୍ତପର୍ଣ୍ଣିର, ମାଧବୀ ଲତାର
ବଉଳ ପଳାଶ ଆଉ ଗଙ୍ଗଶିଉଳିର ?
କେଉଁ ବିଦେଶିନୀ ପାଇଁ
ସ୍ମୃତିସ୍ତମ୍ଭ ଥାପିଥିଲ
ହୃଦୟରେ
କେତେ ଶିଶିର ଭିଜା ସକାଳ
କେତେ ପୌଷର ଅପରାହ୍ଣ
ଭିଜି ଯାଇଥିବ ତମର
କୋମଳ ଗାନ୍ଧାର ରାଗରେ ।
ସେଥିପାଇଁ ତମ 'ବିଦେଶିନୀ' କବିତା
ଏତେ ପ୍ରିୟ
ଏତେ ଆପଣାର ମୋର ।
କେଉଁ ବିଦେଶିନୀ ପାଇଁ
ତମେ ପ୍ରଦୀପ ଜାଳି
ଉତ୍ତରାୟଣର ନୀରବତା ଭିତରେ
କାଟୁଥିଲ କେତେ କେତେ କାଳ
କେତେ ମନ୍ୱନ୍ତର ।




ପ୍ରୀତମ ପ୍ରକାଶନୀ